ତେଣୁ ସେଠାରୁ ଫେରି ପଦ୍ମମଣି ରାଜସଭାରେ ରାଜାଙ୍କୁ କଥାଟା କହିଲେ—

ରାଜ ଦରବାରରେ ନୂତନ ଚୋର
ମୂଷା କରନ୍ତି ଘରରେ ଖୋଳ ।
ବେଠି ଖଟୁଛନ୍ତି ଜନ ପରଜା
ନଗରେ ବୁଲନ୍ତି ମଉଳ ସଜ୍ଜା ।
ରାଜାଙ୍କୁ ଗଢ଼ିଲେଣି ଭୁଲ ଯେ
ମୂର୍ଖ ଚେଲା ସବେ ପ୍ରଶଂସା ପାଆନ୍ତି
ଅନାଡ଼ି ହେଲେଣି ଖାଲି ଯେ ।

ରାଜା କବିଙ୍କ କଥାର ସାରମର୍ମ କଣ ଜାଣିବାକୁ ଆଗ୍ରହ ପ୍ରକାଶ କରନ୍ତେ, ପଦ୍ମମଣି ସବୁକଥା ବୁଝାଇ କହିଲେ ଏବଂ ଜାହିର କଲେ—

—ଆପଣ ରାଜ୍ୟରେ ଗୁଣ ହେଉଛି ସେଥିପ୍ରତି ନଜର ନ ରଖିଲେ ଶେଷରେ ସର୍ବଭଣ୍ଡାର ଖାଲି ହେବ । ଯେବେ ଆଉ ଗୁଣୀଙ୍କୁ ପାଇବେ ନାହିଁ । ଶେଷରେ ମୂର୍ଖ ଚେଲା ଏକ ଜମିଦାର ହୋଇ ବସିବ । ଲୋକଙ୍କୁ ବେଠି ଖଟାଇ ନଜରକୁ ପ୍ରବେଶ କରିବା କଣ ଭଲ ସାଧାରଣ କଥା ? ପ୍ରଜାମାନେ ଯଦି ଏହିପରି କରନ୍ତି ରାଜାଙ୍କର ରାଜ ପଣ ଆଉ ରହିବ କିପରି ?

ତେଣୁ ପଦ୍ମମଣିଙ୍କୁ ରାଜାଙ୍କର ବିଶ୍ୱାସ ନହେଲା । ସେ ତତ୍ପର ପଠାଇ ମୂର୍ଖ ଚେଲାକୁ ଦରବାରକୁ ଆଣାଇ ପରୀକ୍ଷା କଲେ । ରାଜାଙ୍କଦ୍ୱାରା ଜାଗୀର ପତ୍ର । ପୂର୍ବରୁ

ଧର୍ମବେଳ ମତର କାମ କରନ୍ତି । ଉନ୍ନତି ଆଣି ଦେଖାଇ ପ୍ରଜାଙ୍କୁ କମନପରେ ସ୍ୱଭୂକ ପ୍ରକାର କର କାମ ଉଠାଇ ନେଉଛି ଏବଂ ଜନର ନାମ ବଖ୍ୟାତ କରୁଥିବା ସ୍ୱଜଦ୍ରୋହୀଙ୍କୁ ଦେଉଁ ଦଣ୍ଡ ଦଆଯିବ ଏହାର ବେଳ ପଣ୍ଡିତ ତଥା ମନ୍ତ୍ରୀମଣ୍ଡଳରେ ।

ଏତସ ମୃସଚେଲର ସମସ୍ତ ପରିବାରର ଲୋକେ ଆସି ଦଣ୍ଡା କଣ୍ଠା କଲେ । ନଜର ଅପରାଧ ଲାଗି ମୁସ ଚେଲ କ୍ଷମା ମାଗୁଁଛି ।

କଣ ଦେଖିଲେ ଏଥର । ସ୍ୱଜାତ ସରି ଗଲେଣି, ନୂଏତ ପ୍ରାଣଦଣ୍ଡ ଆଦେଶ ଯଦ କଣ୍ଠଦଆନ୍ତ ତେବେ ଏତସର ପରିବାର ଉଜନ ହେଇଯିବ ।

ତତ୍ପର ପଦ୍ମମଣି କହିଲେ---

ଅଲ୍ପକ ସଲ୍ପକ ଲୋକଃ
ମନେ କଳଶ୍ଚ ଗର୍ବିତା
ଭଚ୍ ବୃକ୍ଷ ମୂଳେ ବାସ ଦଣ୍ଡଛତ୍ର ଧରାପୂଣ ।

ଅର୍ଥାତ୍—ବେଙ୍ଗ ଅତ ସାମାନ୍ୟ ଜୀବ । ସେ ଛତୁ ବୃକ୍ଷ ଶକ୍ଷତଳେ ବସି ବର୍ଷାବେଳେ 'ଗର୍ବ କରେ ମୋ ମୁଣ୍ଡରେ ସବସ୍ତ ଛତା ମୁଁ ବେଳେବଳ । ସାମାନ୍ୟ ଏ ମୁସ ଚେଲଙ୍କୁ ସ୍ୱଜଧନ ଓ ଲୋକଙ୍କୁ ଠକାଇ ବଡ଼ଲୋକ ହେବାକୁ ସ୍ୱଚାହିଁତ ଜାନ ଭୁଲି ଯାଉଛି ।

ଦଣ୍ଡିବା ପଣ ସ୍ୱଜାଙ୍କର
ହୋଇଲେ ନ୍ୟାୟର ଏହାର ।

ଉଁହିଁକା ନ ଶ୍ରାବନ୍ତୁ କଥା
କରନ୍ତୁ ସଜ୍ଜସବ ଚିନ୍ତା
ପ୍ରାଣେ ମାରିବେ ଶିବ ସତ୍ୟ
ବଣ୍ଟିବା ଅନ୍ୟ ବାଟ ଧନ ।

ଏକଥା ଶୁଣି ରାଜା କହିଲେ—

ତୁମେ ପଦ୍ମମଣି ଏହାର କଣ ବ୍ୟବସ୍ଥା କର ?

—ପଦ୍ମମଣି ସାମାନ୍ୟ ହସି କହିଲେ—

ପ୍ରଥମେ ଯେଉଁ ବେଠିଆ ଲୋକଙ୍କୁ ସେ ଖଟାଉଛି, ସେମାନଙ୍କୁ ଉଚିତ ଧନ ପ୍ରସାଦ କରି ଦେଇ ଦେଉ । ମଠର ଦ୍ୱାରରେ ସେଉ ନିର୍ମିତ ମଠର ବୋଲି ନାମ ଫଳକ ଲେଖି ଏ ସେ ସେବାଦାସ ରୂପରେ କାର୍ଯ୍ୟ କରୁ । ନଜ ମୁହଁରେ ସମସ୍ତଙ୍କୁ କହୁ ମୁଁ ରାଜାଙ୍କର ଆଦେଶରେ ପ୍ରଜାଙ୍କର ସୁଖ ଲାଗି ମଠର କାର୍ଯ୍ୟ କରୁଅଛି ।

ସେକଥାଟା ସମସ୍ତିଙ୍କ ମନକୁ ପାଇଗଲା । ରାଜା ମୁକ୍ତ ହେଲେ ଚେଲାକୁ । ରାଜାଙ୍କ ଆଦେଶରେ ସମସ୍ତ ଧନ ବାଣ୍ଟି ଦେଇ ବନାଉଦନ ସେବକ ପଞ୍ଚ ରତ୍ନା ଏବଂ ପଣ୍ଡିତ ପଦ୍ମମଣିଙ୍କୁ ସେ ଅଶେଷ ଧନ୍ୟବାଦ ଦେଇ ବହୁମୂଲ୍ୟ ଉପହାର ପଠାଇ ଥିଲେ ।

# ଶୀତକାଳୀନ ନଗର ଯାତ୍ରା

ଶୀତକାଳୀନ ନଗର ଯାତ୍ରା କରିବାକୁ ରାଜା ମନସ୍ଥ କଲେ । ରାଜ ମନ୍ତ୍ରୀ ପରିଷଦ ଓ ପାଇକ ବାହୁ ଧନୁ ହାତୀ ଘୋଡ଼ା ଛାଉଣୀ ସଜାଇବା ତମ୍ବୁସହ ରାଜା ଦିନ ଠିକ୍ କରି ବାହାରି ପଡ଼ିଲେ ।

ଯଦୁମଣି ମଧ୍ୟ ରାଜାଙ୍କ ସଙ୍ଗରେ ରହିଥାନ୍ତି । ସେ ନ ରହିଲେ ହାସ୍ୟ ରସାନନ୍ଦ ପରିବେଷଣ କରିବ କିଏ ?

ପ୍ରାକୃତିକ ସମାବେଶ ଭରା ବନଗିରି ପଥ ଦେଇ ନଗର ଗ୍ରାମ ଭିତର ଦେଇ ଏକ ଗିରି ଝରଣା ପାଖରେ ଛାଉଣୀ ପଡ଼ିଲା । ସଞ୍ଜ ହେବା ପୂର୍ବରୁ ସେଠାରେ ସମସ୍ତେ ଉପସ୍ଥିତ ହେଲେ । ବୈଠକ ନାଚ ବ୍ୟବସ୍ଥା । ରାଜା କବିଙ୍କୁ ଧରି ଏକ ଗିରି ଶୃଙ୍ଗ ଉପରକୁ ଉଠି ଏକ ରମଣୀୟ ସ୍ଥାନରେ ବସି ଦୂରରୁ ଶୋଭା ଦର୍ଶନ କରୁଥାନ୍ତି । ହଠାତ୍ ରାଜାଙ୍କ ଦୃଷ୍ଟି ସ୍ଥିର ହେଲା ଦୂରରେ ଥିବା ସ୍ନାନଘାଟରେ ରୂପସୀ ତରୁଣୀଟିକୁ ଦେଖି ।

ରାଜା ପ୍ରଶ୍ନ କଲେ—

—ଶୁଣ କବିବର । ଆଗରେ ଏକ ନବୀନ ରୂପସୀ ଉପସ୍ଥିତ ହେଉ ।

କବି ସ୍ୱରେ ସ୍ୱରେ କହିଲେ—

ମୁକ୍ତକ ଅଛି ସେ ବଉଫୁଟା ଫୁଲ
ମହକୁଛି ରୂପବାସ ।
ବରଜ କୁଳର ମରାଳୀ ବାଳିକା
ଜଳଜ ଶିରି ସଦୃଶ ।
ଅଭିସାରେ ଯବା ଗଜରୁ ଗମଣୀ
ଚଳନେ ଚମକ ସୃଜେଁ
ରଙ୍ଗ ଅଧର ତା କଅଁଳ ସକାସେ
ଟିକଏ ମଞ୍ଜୁଳ ମୃଦେଁ ।

ରାଜା ବହୁତ ଖୁସି ହେଲେ କବିଙ୍କର ରୂପ ବର୍ଣ୍ଣନା ଶୁଣି । ଆନନ୍ଦରେ ଗିରଶୃଙ୍ଗରୁ ଅବତରଣ କରି ଛାଉଣୀରେ ବିଶ୍ରାମ କଲେ । ବିଦୂଷକ ପାଖରେ ହାସ୍ୟ ପରିହାସରେ ସମସ୍ତଙ୍କୁ ହସାଇ ହସାଇ ବେଦମ କରୁଥାନ୍ତି ।

ରାଜା କହିଲେ—

ବାସ୍ତବରେ ଯଦୁମଣି ଆମର ଗୋଟିଏ ଅମୂଲ୍ୟ ସମ୍ପଦ । ସେ ନ ଥିଲେ ଜଗତ ନିରସ ଲାଗେ ସବୁବେଳେ । ଅଦ୍ଭୁତ କଳା ରହିଛି ତା ଭିତରେ ।

# ରାଣୀଙ୍କ ରାନ୍ଧଣା ସୁଆଦ ଲବଣି

ରାଜାଙ୍କ ପାଟରାଣୀ ଖାଲି ସୁନ୍ଦରୀ ନଥିଲେ । ସେ ଗୁଣବତୀ ପ୍ରେମଶୀଳା, ପତିବ୍ରତା, ସୁମଧୁର ଭାଷିଣୀ, ଧର୍ମପରାୟଣା । ସବୁଗୁଣ ତାଙ୍କର ରହିଥିଲା ।

ଯଦୁମଣି ରାଣୀଙ୍କ ହାତବଢ଼ା ମିଷ୍ଟାନ୍ନ ଖାଇବାକୁ ବହୁତ ଭଲ ପାଆନ୍ତି ।

ଥରେ ରାଜଭବନରେ 'ଯଦୁମଣି ରାଜାଙ୍କ ସହିତ ବହୁତ ଆଳାପ ପରେ ରାଜା ପଚାରିଲେ—

ଆଜି ତୁମେ ଯାଅ ଯଦୁମଣି ?

ଯଦୁମଣି ଟିକେ ରସିକତା କରି କହିଲେ—

—ଛାମୁଙ୍କ ପାଖରୁ ଖାଇ ଯିବି ।

ରାଜା କହିଲେ—

—ତେବେ ତୁମ କଣ ନେବ ।

ଯଦୁମଣି କହିଲେ—

ଧନ ସଙ୍ଗେ ନେଲେ ଖଣ୍ଡ ବୋହିନେବ
ମନ ନେଲେ ଯିବ ସବୁ ।

ପଞ୍ଚବନ ହେଲେ ଅପକାରି ହେବ
ଏ ମାଗିବ ବନ୍ଧୁଧାସ୍ତ ଃ
ଉଦର ଲାଳସା ପୂରଣ କରିଲେ
ଉପାସ୍ତ କେ ହେବନାହିଁ
ରାଣୀଙ୍କ ରନ୍ଧଣୀ ଅନ୍ନପୂର୍ଣ୍ଣା ସମ
ମିଳଲେ ସନ୍ତୋଷ ହେବ ।

ଏ କଥାରେ ରାଜା ହୋ ହୋ ହୋଇ ହସି ଉଠିଲେ । ରାଣୀଙ୍କୁ ତୃକାର ପଦ୍ୟର ଅର୍ଥ ବୁଝାଇ ଦେଲେ । ରାଣୀ ବହୁତ ଖୁସିହେଲେ ବହୁ ପ୍ରକାର ବ୍ୟଞ୍ଜନ ପ୍ରସ୍ତୁତ କରି ତାଙ୍କୁ ଖୁଆଇ ସନ୍ତୁଷ୍ଟ କରାଇଲେ । ପଦ୍ମମଣି ଭୁର ଭୋଜନପାଉ ବାବୁଙ୍କିମାନ୍ତ କରୁ ଗାଇଲେ—

—ମା ଅନ୍ନପୂର୍ଣ୍ଣା ରାଜା ଘରଣୀ
ଅରଣିଲେ ଅନ୍ନ ମନକୁ ଜାଣି
ମରତେ ସମାନ ନଥିବେ କେହୁ
ରାଜପୁର ଶୋଭା ତାଙ୍କର ପାଇଁ
ହେଲା ତେବେ ଯେ
ଜଗନ୍ନାଥ କରନ୍ତୁ ଆଶିଷ ଯେ ।

# ରାଜାଙ୍କ ଠାକୁର ଯଦୁମଣି

ରସିକ ଯଦୁମଣି କେବଳ ଉପହାସ ବିଦୂଷକ ନଥିଲେ । ସେ ନିର୍ଭୀକ ସମାଲୋଚକ ମଧ୍ୟ । ବିଭିନ୍ନ ଲେଖାରେ ତାଙ୍କର ପରିହାସ ଛଳରେ ବହୁ କ୍ଷେତ୍ରରେ ଅପ୍ରିୟ ଓ ଅଶୋଭନୀୟ କଥାକୁ ସମାଲୋଚନା କରନ୍ତି ।

ଥରେ ଯଦୁମଣି ଏକ ବିଶେଷ ଖବର ପାଇ ରାଜାଙ୍କୁ ଦେଖା କରିବାକୁ ଶୀତ ସକାଳେ ରାଜଭବନରେ ଉପସ୍ଥିତ ହେଲେ । ପରିଚାରିକା ପାଖରୁ ସମ୍ବାଦ ନେଲେ ରାଜା ଓ ରାଣୀ ଠାକୁର ପୂଜାରେ ବ୍ୟସ୍ତ ରହିଛନ୍ତି ।

ଯଦୁମଣି ଜାଣି ନଥିଲେ ଯେ ରାଜା ନିଜେ ଅତି ପୂର୍ବରୁ ଉଠି ନିଜ ନିତ୍ୟକର୍ମ ସାରି ଉପାସନା କରନ୍ତି ବୋଲି ।

କୌତୂହଳୀ ହେଲେ ଯଦୁମଣି । ସେଦିନ ଗଜେଶ୍ୱର ମନ୍ଦିରରେ ବିଶେଷ ପୂଜା ଦର୍ଶନରେ ରାଜାଙ୍କର ଯୋଗ କରିବା କଥା ।

ଯଦୁମଣି ପରିକଳ୍ପିତ ସହିତ ଉପାସନା ମଣ୍ଡପକୁ ରାଜାଙ୍କର ପୂଜକ ବେଶ ଦେଖିବାକୁ ପ୍ରବେଶ କଲେ । ଦେବତା ପୂଜା

ମଠର ଅଗରେ ଠିଆ ହେଲେ ଜଣ । ଦେଖିଲେ ଶୌଭବଜ୍ଜ୍ୱଳ ରତ୍ନମଣିମୟ କାନ୍ତ ଜଡ଼ୁଣ୍ଟିତ ଦେବାଙ୍ଗନା। ସବୁଜ ଶ୍ୱେତ ବସ୍ତ୍ର ପରିଧାନା ସ୍ୱର୍ଣ୍ଣୀ ସେବକା ଦ୍ୱାରରେ ଆରତି ସଜାଡ଼ୁଛନ୍ତି ।

ଶ୍ୱେତବସ୍ତ୍ର ପରିଧାନ ଓ ଶ୍ୱେତ ଅମ୍ଳାନ ପାଟ ସୂତର ଅଚ୍ଛାଦିତ ନୃପତି ଉପାସନାରେ ନିମଜ୍ଜନାରତ । ଠାକୁର ସବ୍ୟ ସ୍ଥାନ ପାଉଛନ୍ତି । ଅଗୁରୁ ଚନ୍ଦନ ଧୂପ ବାସ୍ନାରେ ମନ୍ଦିର ମହକୁଛି ।

ଜଣ ସେବକମୀର ହୋଇ ପ୍ରଣାମ କରି ବ୍ୟଙ୍ଗୋକ୍ତି କରି କହିଲେ—

ନ ଦେଖିଲ ନେତ୍ର ଏ ରୂପ କୁମର
ବିସ୍ମିତ ସ୍ୱତ ମାନ
କାହିଁ କେଉଁ ରୂପ ଧରୁଛ ଠାକୁର
କାହିଁ ହୋଇଯାଅ ଲୀନ ।
କେଉଁଠାରେ ଗଣ୍ଡୁ କେଉଁଠାରେ ଖଣ୍ଡୁ
କେଉଁଠାରେ ପୃଥ୍ୱୀ ମୁଣ୍ଡ
ଜଗା କାଳିଆରେ ବୋଲନ୍ତି କେତେକ
ପ୍ରଭୁ ! କରୁଣା ବାରିଧି ।
ଖଣ୍ଡିଆ; ମୁଣ୍ଡିଆ କାଲିଆଗଉଡ଼ିଆ
ପଥର କାଠରେ ଥାଅ
ମାଗିଖିଆ ହେଲ ଦ୍ୱାରାଦେଶ ବସି
ରଙ୍କଙ୍କ ସୁଖଦେ ଥାଅ ।

ଏଥ ରସିକତା କରି ଉମିତ ଗାଇ ଶୁଣାଉଥିଲେ । ରାଜା ମନେ ମନେ ଅରକ୍ତ ହୋଇ ପୂଜା ଶେଷ କରି ଉଠି ପଡ଼ିଲେ । କହିଲେ—

ଯଦୁମଣି ତୁମେ ସବୁଠାରେ ଏପରି ରସିକତା କରିବା ଭଲ ନୁହେଁ ?

ଯଦୁମଣି ନୀରବ ହୋଇଗଲେ । ରାଣୀ ତାଙ୍କର ପୂଜାଖଣ୍ଡଣୀ ବେଶ ପରିବର୍ତ୍ତନ କରି ଆସି ଯଦୁଙ୍କୁ ଓ ରାଜାଙ୍କୁ ବସାଇ ଦେଇ ଜଳଯୋଗ ବ୍ୟବସ୍ଥା କଲେ ।

ଯଦୁମଣି ଜାଣିଲେ ରାଜା ଟିକେ ଅରକ୍ତ ହେଉଛନ୍ତି । ତେଣୁ ସେ ରାଣୀଙ୍କ ଉପସ୍ଥିତିରେ କହିଲେ—

ଅନ୍ତର ତୁମେ ଅନ୍ତ ନାହିଁ
ଅକ୍ଷରକ୍ଷରେ ଯାଉ ଦେହି…।

—ତୁମ୍ଭ ସମ୍ମୁଖ ହେଲେ ଅଧମ ଉପରେ । ହେଲେ ସତ କଥା ଆଜ୍ଞା, ଏ ଜାଡ଼ଖିଆ ଠାକୁରର ଲାଜ ଲାଜ ନାହିଁ । ସେଥିଲାଗି ଆଣ୍ଡୁଆ-ଚୁଡ଼ିଆ-ଖାଇଆଳ । ଲବଣି ହେଉ ଲଡ଼ୁ ବାଡେ ଯୋଗାଏ…

—ଯଦୁମଣି ! ତୁମେ ପ୍ରଭୁଙ୍କୁ ନିନ୍ଦା କରୁଛ ?

ହସିଲେ ରାଜା ।

କହିଲେ ମୋ ଚଉଦ ପୁରୁଷର ଶାସ୍ତ୍ରରେ ଖାଙ୍କୁ କମିତ ଦେଖି ଆସିଛନ୍ତି ? ସାଙ୍ଗ ପୁଷ୍ପବାଟରେ ଦେଖୁ ନାହାନ୍ତି—କଉଠି ମାଉସିଟିଏ ତ କଉଠି ମାଉଛଆଟିଏ··· ।

ରାଣୀ ଓ ରଜା ହସି ଉଠିଲେ ।

ରାଣୀ କହିଲେ—

—ସତରେ ପଣ୍ଡିତେ ଭମ କଥାରେ କିଛି ଗୋଟାଏ ଆଶ୍ଚର୍ଯ୍ୟ ଆନନ୍ଦରେ ଶକ୍ତି ରହିଛି । ଥାଉ ହଉ—ଚଣ୍ଡୀ ମଣ୍ଡପ ଚଳେ ବେଳ ହେଲାଣି ।

ରଜା ଉଠିଲେ । କବି ମଧ୍ୟ ବିଦାୟ ନେଲେ ।

—●—

# ରାଜା ପୂଜା ପାଏ ଆପଣା ଦେଶେ

ଯଦୁମଣି ଥରେ ରଣପୁର ରାଜ ଦରବାରକୁ ବୁଲିଯାଇ ଥିଲେ । ସେଠିକାର ପଣ୍ଡିତ ସଭାରେ ତାଙ୍କୁ ସନମାନ କରି ବସାଇଲେ । ତାଙ୍କର ପରିଚୟ ପାଇ ବହୁତ ସନମାନ କରି ନସ୍ୟାପତ୍ରର ଖବର ବୁଝିଲେ ।

ସେଠାକାର ପଣ୍ଡିତ କହିଲେ—

—ରାଜସଭାରେ ବଡ଼ କିଏ ?

ଯଦୁମଣି ହସିଦେଇ କହିଲେ—

—ଆମ୍ଭେ ବଡ଼ ।

ସମସ୍ତେ ଅବାକ୍ ହୋଇ ସ୍ତମ୍ଭିଲେ । ଏତେ ବଡ଼ ରାଜ ଦରବାରରେ ସାମାନ୍ୟ ବ୍ରାହ୍ମଣଟାଏ ନିଜକୁ ବଡ଼ କହିବା କମ୍ କଥା ନୁହେଁ ।

ଯଦୁମଣି ନିର୍ଭୀକ ସ୍ୱରରେ କହିଲେ —

ରାଜା ବଡ଼ ଅଟେ ନିଜ ରାଜ୍ୟରେ
କବି ପୂଜା ପାଏ ଦେଶ ବିଦେଶରେ ।

ଆମେ ବଡ଼ ଅର୍ଥ ମୋର ଏ ଦେହଟାକୁ ମୁଁ କହୁନାହିଁ । ପଣ୍ଡିତ କବି ଜ୍ଞାନ ସବୁଠାରେ ବଡ଼ । ଏହାଛଡ଼ା ଆଂମ୍ଭ ଦେବ ଗତ ପଢଥି । ପଢଥି ସ୍ୱୟଂ ନାରାୟଣ ସଦୃଶ ··

କବିଙ୍କର ଏପରି ଯୁକ୍ତିରେ ସମସ୍ତେ ଖୁସି ହେଲେ ରାଜା ମଧ୍ୟ ସନ୍ତୁଷ୍ଟ ହେଲେ । ଯଦୁମଣିର ରହିବାର ସୁନ୍ଦର ବ୍ୟବସ୍ଥା କରି-ଦେଲେ ।

ରଣପୁର ରାଜା ପରଶତନ କବିଙ୍କ ସହିତ ସ୍ୱଜନବର୍ଗରେ ଆଳାପ ଆଲୋଚନା କରି ପ୍ରଶ୍ନ କଲେ—

—କବିବର । ତୁମେ ମହାରଥୀଙ୍କର ସ୍ତ୍ରୀଙ୍କୁ ଯେବେ ଜାଣିପାର ତେବେ ବର୍ଣ୍ଣନା କର ।

କବି ଛନ୍ଦ କାବ୍ୟରେ କହିଲେ—

ଦୁଆର ହେବନ୍ତ ଜନକୁ ଧରଣ
ବନ ସହୁଥିଲ ଉଳନ ।
ଦେଖିଲେ ବାଳକ ନଗର ବୈଳନ
ଛନ୍ଦିବ ମନରେ ଶୂଳନ ॥
ମହିମା ନାନାଥ ହେବେ ତପ କରନ୍ତୁ ।
ଉଳନ ଉଳଗି ହୋଇଣ ବାଳନ
ବାଳରେ ବାଳବା ପାଉନ୍ତୁ ॥

ରାଜା ଏବାର ସାରମର୍ମ ବୁଝି ହେବେ ଖୁସି ହୋଇଗଲେ । ଆହୁରି ଅନେକ ପ୍ରଶ୍ନ ପଚ୍ଛିଣ ତାର ଉତ୍ତର ଶୁଣିବ ଶାର ପ୍ରଶଂସା କରି ଆଶୀର୍ବାଦିତ ଉପହାରରେ ପ୍ରଦାନ କରିଲେ ।

# ଅପମାନର ପ୍ରତିଶୋଧ

ରଣପୁରରେ ଉତ୍ସବ ଭିତରେ ଥରେ ଯଦୁମଣି ରାଜ ଦର-ବାରରେ ନଜର କହୁ ଆପତ୍ତି କରିବାକୁ ମନସ୍ଥ କଲେ । ରାଜା ପ୍ରଜାମାନଙ୍କର ଦୁଃଖ ସୁଖ ଶୁଣିବାରେ ବ୍ୟସ୍ତ ।

ଯଦୁମଣି ହାତଯୋଡ଼ି କହିଲେ—

ମହିମା—?

ରାଜା ଶୁଣିଲେ ନାହିଁ । ଯଦୁମଣି ଭାବିଲେ ହୁଏତ ଅନ୍ୟମନସ୍କ ଥିବାରୁ ଉତ୍ତର ଦେଲେନ । କବି ଆଉ ଦୁଇଥର ଡାକି ଉତ୍ତର ପାଇଲେ ନାହିଁ ।

କବି ଅଭକ୍ତ ହୋଇ ଅପମାନିତ ହେଲେ । ସେ ପ୍ରତିଶୋଧ ନେବାକୁ କହିଲେ···

—ନବ ଦୁର୍ଗା ? ଇଷ୍ଟ ଦେବତା ଆଚରଣ ?

କବି ଏତକ କହି ସଭାରୁ ଉଠିଗଲେ ।

ରାଜାଙ୍କୁ ବହୁତ ଅପମାନ ହେଲା । ସେ ଦରବାରରୁ ଉଠି ଉଆସକୁ ଯାଇ କବିଙ୍କ ଅପମାନ କଥାକୁ ଚିନ୍ତା କରିବାକୁ ଲାଗିଲେ ।

ଶକ୍ରଦେବ ସଭାକୁ ପଦ୍ମମଣିଙ୍କୁ ଡକାଇ ସେହି ଦିନର ଅପମାନର ଅର୍ଥ ପଚାରିଲେ ।

ପଦ୍ମମଣି ଦୁଃଖାନ୍ତକରଣରେ କହିଲେ—

ସ୍ୱାମୀଙ୍କୁ ଅନେକ ଦୁଃଖ ଜଣାଇବାକୁ ଚିନ୍ତା କଲି । ମତେ ନଗଣ୍ୟ ଭାବି ଦୃଷ୍ଟିଲେନି କି ଉତ୍ତର ଦେଲେନି । ଜଣେ ନାରୀଙ୍କୁ ବ୍ୟବହାର କରିବା ଦାରୁଣ ଅପମାନ । ତେଣୁ ମୁଁ ପ୍ରତିଶୋଧ-ମୂଳକ ସ୍ୱରରେ କହିଲି—

—ନବଦୁର୍ଗା ଲକ୍ଷ୍ମୀ ଦେବତା ସହ ଆଚରଣ ?

ରାଜା ସଭାରେ କହିଲେ—

—ତୁମେ ଗୋଟିଏ ରାଜପରିବାର ବଧୂ ନ । ଅନ୍ୟ ରାଜ୍ୟର ଦରବାରରେ ନୃପତିଙ୍କୁ ଏପରି ଅପମାନିତ କରିବାର ପରିଣାମ କ'ଣ ହୋଇପାରେ ଚିନ୍ତା କରିଛନ୍ତି ।

ହସିଲେ ପଦ୍ମମଣି ।

—କହିଲେ ସଭାର ପଣ୍ଡିତମାନେ ମୋ ବାକ୍ୟର ଅର୍ଥ କରି ବୁଝାନ୍ତୁ । ମୁଁ ଖରାପ କହିଥିଲେ ଦଣ୍ଡ ଦେବେ ।

ଅନ୍ୟ ପଣ୍ଡିତମାନେ କଥାର ଅର୍ଥ ବୁଝି ନପାରି ପଦ୍ମମଣିଙ୍କୁ ନିଜ ମୁଖରେ ଅର୍ଥ କହିବାକୁ ଆଦେଶ କଲେ ।

କବି କହିଲେ—

ତେବେ ଶୁଣନ୍ତୁ ସମସ୍ତେ । ଏଠି ଅଧିଷ୍ଠାତ୍ରୀ ଦେବୀ ହେଲେ ବାଉଳ ଠାକୁରାଣୀ । ତାଙ୍କର ଯେପରି ଉଗ୍ରରୂପ ଭୋଗ ଅର୍ପଣ ପୂଜା ସେହିପରି ।

ଦେଖ ଯେପରି ଏଥରବେଳେ ପରବ ରହିଯାଅନ୍ତି । ଆପଣଙ୍କ ଆଚରଣ ମଧ୍ୟ ସେହିପରି ।

ଏକଥାରେ ରାଜାଙ୍କର ରାଗ ଗାଣ୍ଠି ଫିଟିଗଲା । ସେ ସନ୍ତୋଷ ହୋଇ ଉଠି ପଚାରିଲେ—

—ଯଥାର୍ଥ କହେ । ତୁମେ ଜଣଙ୍କ ଓ ସ୍ପଷ୍ଟବାଦୀ ପଦୁପଦା ଶୁଣି ବହୁତ ଖୁସି ହେଲି ।

ପରେ ଦରବାରରୁ ବିଦା ହୋଇ ନିଜ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ ।

# ମୁଆଁ ଖାଇବାକୁ କବିଙ୍କର ଇଚ୍ଛା

ରାଜତନ୍ତ୍ରର କଠୋର ଶାସନ ବେଳରେ ଛୋଟବଡ଼ ବହୁ ରାଜା ଜମିଦାର ଖଣ୍ଡେ ଧେଣ୍ଡେ ରାଜ୍ୟ ଦଖଲ କରି ବସିଥିଲେ। ଯଦୁମଣି ସେତେବେଳେ ନିକଟ ସ୍ଥଳରେ ସ୍ଥିତ ରାଜ୍ୟକୁ ଭ୍ରମଣ କରିବାକୁ ଯାଇ ସୁନାମଧନ୍ୟ ହୋଇ ପାରୁଥିଲେ। ସବୁ ଶେଷରେ ଜନ୍ମସ୍ଥାନ ଓ ଅନ୍ନଦାତା ନୟାଗଡ଼ରେ ଯଶକୀର୍ତ୍ତିକୁ ସେ ବଢ଼ାଇ ଦେଇ-ଥିଲେ । ନୟାଗଡ଼ର ରଜା ଏଇଥି ପାଇଁ ଅତ୍ୟନ୍ତ ଭଲ ପାଉଥିଲେ କବିଙ୍କୁ ।

ରାଜାଙ୍କର ସମସ୍ତ ଅଙ୍ଗ ଅଭିଷେକ ଓ ପର୍ବ ପର୍ବାଣୀରେ ଯଦୁମଣିଙ୍କୁ ଆଗ ଡାକରା ପଡ଼େ । ଯଦୁମଣି ଉପସ୍ଥିତ ନହେଲେ ଯେମିତି ସବୁ ନୀରସ ହୋଇଯାଏ ।

ସେଦିନ ମକର ସଂକ୍ରାନ୍ତି । ମୁଆଁ ଖିଆ ପର୍ବ । କବି ଦେଖିଲେ ମନ୍ଦିରଠାରୁ ରାଜଭବନ ଯାଏ ପିଲାଏ ମୁଆଁ ଖାଉଛନ୍ତି କବିଙ୍କ ଲାଳସା ହେଲା ।

କବି ରାଜଭବନକୁ ଗଲେ । ରାଜାଙ୍କ ସହିତ କଥା ହେଇ କଥା ଛଳରେ କହିଲେ···

ବଡ଼ ଲୋକେ ପିଲା ଖରଚ ଖାଇନ୍ତି
ଗରିବକୁ ସବୁ ମନା

ଏ ମୁଆଁ ଖିଆ ହେବେ ଆଜ ଘରେ ନାହିଁ

ମୁଠାଏ ହେଲେ ବି ଦାନା,

ମନସ୍ଥା ମାନୁଛ ଶାସନ ମୋହର

ମନସା ନଅର ଚାଷି

ପିଲଙ୍କ ପିଲାଏ ଖୁଣ୍ଟି ବସିଥିବେ

ହୃଦ ଉପାଳକୁ ପୃଷ୍ଠି ।

ଭଟ ଆବୃତ୍ତି କରନ୍ତେ—

ନ ଖାଇଲ ସହ । ମନସା ସ୍ୱପ୍ନ ଗ୍ରାମେ ଜନ୍ମରୁ ଆରମ୍ଭ ହେ ଭଗବ ରକ୍ଷା···। ମୁଆଁ ଖିଆ ମହା ଧନବନ୍ତୁ । ମନ ଓ ହବେକ ମଧ୍ୟରେ ଚାଲିଛି ସଂଗ୍ରାମ । ନାହିଁ ଶାନ୍ତି । ଶାରନ୍ତ··· ପରମା ଲକ୍ଷ୍ମୀ ରକ୍ଷାକର ମତେ । କନ୍ତୁ ନାସ୍ତପ୍ରଣ···ର୍ଣ ହେଲେ ଆଦେଶ···ପ୍ରକୃଷ୍ଟା କରିବେ ନ ଭକ୍ତ ଇଚ୍ଛାପୂର୍ଣ୍ଣ ।

ରାଜା ଓ ରାଣୀ ହସି ଉଠିଲେ । କହିଲେ—

ଯାଅ ଭଟ ନର୍ଦ୍ଦସ୍ୱରେ ଫେରୁ । ଅବଲମ୍ବେ ତୁମ ଘର ମୁଆଁ ଖାଇବେ ସୁସ୍ୱାଦୁ ସୁଗନ୍ଧଯୁକ୍ତ ଏକାଦଶ ଆମ୍ଭେ ଉତ୍ତରାଇ ଦେବୁ ।

ପଦ୍ମମଣି ନାଟକୀୟ ଭଙ୍ଗୀରେ ଅଭିବାଦନ କରି କହିଲେ ନୃପତିଙ୍କ ଜୟ ହେଉ । ରାଣୀଙ୍କର ଜନ୍ମ ଚିରନ୍ତନ ହେଉ ।

ଶାନ୍ତି ଭବକୁ ଭବର
ସର୍ବସ୍ୱ ଶାନ୍ତି ପାବୁ ।
ଶାନ୍ତି ନରେଶ ପାବୁ
ନୃପାଙ୍ଗନା ସଙ୍ଗ ଶ୍ୟାନ୍ତି ଭବକୁ ?

●

## କବିଙ୍କର ଚଉପଦ ରଚନା

ମହା ଶକ୍ତିଶାଳୀ ରାଜା ଶ୍ରୀଯୁକ୍ତ ଦେବେନ୍ଦ୍ର ଦେବ ରଣପୁରାରେ ରାଜତ୍ୱ କରୁଥିଲେ । ସେ ଦୁର୍ଦ୍ଦାନ୍ତ ଶତ୍ରୁ ସଂହାରଣ-ଦାକ୍ଷ ଶାସକ ଥିଲେ । ତେଜସ୍ୱୀ ସୁଶାସକ ମଧ୍ୟ ଥିଲେ । ବହୁତ ଧନ ସମ୍ପତ୍ତି ଠୁଳ କରିଥିଲେ ଶ୍ରେଷ୍ଠ ବଡ଼ ବଡ଼ ଜଗ୍ମ କରି । ଏଣୁ କରି ଖୁବ୍ ଦୁର୍ଦ୍ଦାନ୍ତ ଓ ଦେଖଲୁଆ ଥିଲେ । ଅନ୍ୟ ରାଜାମାନଙ୍କ ସେ ଖାତିର କରୁ ନ ଥିଲେ ।

କବି ପଦ୍ମମଣି ଥରେ ବୁଲିବାକୁ ଯାଇ, ରଣପୁରା ରାଜ ଦରବାରରେ ଉପସ୍ଥିତ ହେଲେ । ନିଜର ପରିଚୟ ସେ ଦେଲେ ।

ଦୁଃଖର କଥା ଗୁଣ ଉଦ୍ଭୁଷକ ହୋଇ ତାଙ୍କୁ କେହି ଖାତିର କଲେ ନାହିଁ । ବସିବାକୁ କହିଲେନି କି ରହିବାକୁ ମଧ୍ୟ କହିଲେ ନାହିଁ ।

ଭଦ୍ରଙ୍କ ପକ୍ଷରେ ଏହା ଘୋର ଅପମାନ ହେଲା । ଅଧିକ ଅପମାନ ହେଲା ନୟାଗଡ଼ର ରାଜ୍ୟକୁ ।

ସେହି ଯଦୁମଣି ଜଣେ ଗ୍ରାମ କର୍ମଚାରୀଙ୍କ ସହିତ ମଧୁର ବ୍ୟବହାରରେ ସନ୍ତୋଷ କରାଇଲେ ଏବଂ ତାଙ୍କର ଘରେ ଯାଇ ରାତ୍ରିଯାପନ କଲେ ।

ସେହି ସମୟରେ ଦଶପଲ୍ଲାରେ ବହୁ ଅର୍ଥ ବିନିଯୋଗ ହୋଇ ନବନିର୍ମିତ ଶ୍ରୀଜଗନ୍ନାଥ ମନ୍ଦିର ତୋଳା ହୋଇ ଶ୍ରୀମୂର୍ତ୍ତି ପ୍ରତିଷ୍ଠା ହେଉଥାଏ ।

ଘରଣନ ରାଜା ନରେନ୍ଦ୍ର ଦେବ ସଦଳବଳେ ସେହି ମନ୍ଦିର ପ୍ରତିଷ୍ଠା ଉତ୍ସବରେ ଯୋଗ ଦେବାର ଆୟୋଜନ ହୋଇଥାଏ । ଯଦୁମଣି ଏହା ଶୁଣି ସେହି ଉତ୍ସବ ଦେଖିବା ମନସ୍ଥ କଲେ ଓ ବାହାରି ପଡ଼ିଲେ ।

ପ୍ରାକୃତିକ ଶୋଭା ସମ୍ଭାର ବନାନୀ ଭିତରେ ଅପୂର୍ବ ଚାରୁ-କାର୍ଯ୍ୟ ନିର୍ମିତ ମନ୍ଦିର ଦେଖି ଭୁଲି ଦେଖୁଥିଲେ ସବୁ । ବହୁ ଲୋକ ତାଙ୍କ ପରିଚୟ ପାଇ ସମ୍ମାନ ଜଣାଉଥିଲେ । ନବ ମନ୍ଦିର ଭିତରେ ଦେଖିଲେ ରାଜା ଗଜପତି ଯାଉଛନ୍ତି ପୂଜନ

ମାନେ ଅଭିଷେକ ପ୍ରସ୍ତୁତି କାର୍ଯ୍ୟରେ ବ୍ୟସ୍ତ । ସ୍ଥାନଟି ଜନଗହଳ ଓ ମୁଖରିତ ହୋଇଉଠିଛି । କବି ଠିଆହୋଇ ଗାଇଲେ—

—ବୃନ୍ଦାବନେ ଜଗନ୍ନାଥ ହେବା ଗୋସାଇଁ
ରଥ ବୋଲି ଇନ୍ଦ୍ର ହେବ ଶଗଡ଼େ ବସାଇ ।
ବେଶ ବୋଲି ପାଦ୍ୟ ଦେବ ବଢ଼ିଆ ମୁଆଁ
ଧୂପ ବୋଲି ମାଉ ଦେବେ ଜଳା ଚୁଲା ଧୂଆଁ ।

ପଦୁମଣିଙ୍କର ଏଇ ସ୍ତୁତି ଆବୃତ୍ତି ରାଜା ଶୁଣିଲେ । ସେ କଥାର ମର୍ମ ବୁଝି ଲଜ୍ଜିତ ଓ ଅପ୍ରସ୍ତୁତ ହେଲେ । କବିଙ୍କୁ ଡ଼ାକି କହିଲେ—

କାଲି ମୁଁ ବ୍ୟସ୍ତ ଥିଲି । ତୁମ ମହାପ୍ରଭୁଙ୍କର ବଡ଼େଇ ଯଦି ସେତେବେଳେ ଅବହେଳିତ ହୋଇଛି । ଆଗାମୀ ଅନୁଷ୍ଠାନରେ ତୁମ ରହିବା ଓ ଖାଇବା ବ୍ୟବସ୍ଥା ହେବ । ସେତେବେଳେ ରହିବ ଅସୁବିଧା କିଛି ହେବନାହିଁ । ରାଜା ଏହା କହି ମନ୍ତ୍ରୀଙ୍କୁ ପଦୁମଣିଙ୍କ ଦାୟିତ୍ୱ ଦେଲେ । ପଦୁମଣି ଟିକେ ଆଶ୍ୱସ୍ତ ହେଲେ । ରାଜା ଆଦେଶରେ ମନ୍ଦିରରୁ ଫେରିବା ମାତ୍ରେ କର୍ମଚାରୀମାନେ ତାଙ୍କୁ ସମାଦର କରି ନେଇଗଲେ ରାଜଭବନକୁ ।

ଏଣେ ରାଜଭବନ ଶୋଭା ଦେଖି ସନ୍ତୁଷ୍ଟ ହେଲେ । ନିଜର ଘରର ଦାସ ରାଜା ତଥା ପରିବାର ଲୋକଙ୍କୁ ସେ ଆପ୍ୟାୟିତ କରି ନେଲେ । ଷଡ଼ଋତୁଠାରୁ ସବୁକୁ ଆସି ବହୁତର୍କ ଯୁକ୍ତିର ସମାଧାନ କରାଇ ମହାପ୍ରଭୁଙ୍କର ସୁନାମ ଫେରାଇଲେ । ତାଙ୍କୁ ପ୍ରଥମ ଦିନର

ଅପମାନ କଥାକୁ ସେ ଭୁଲିପାରି ନଥିଲେ । ସେ କପଟ ରାଜାଙ୍କୁ ଅପମାନ କରିବେ ବୋଲି ଚିନ୍ତା କରୁଥିଲେ । ରାଜା ବୀରେନ୍ଦ୍ରଦେବ ବେଇତନ ସବେ ଶାନ୍ତ ଓ ସ୍ଥିର ଅବସ୍ଥାରେ ଦରବାରରେ ଅଛନ୍ତି । କବି ଉପସ୍ଥିତ ହେଲେ ସୁବର୍ଣ୍ଣକୁ ଦିବାର ଆଦେଶ ଦେଲେ ।

ରାଜା ହସିଦେଇ କହିଲେ

—କବି ଦୁଃଖ , ଜୀବନ ର ନସ୍ୟାତେଷ୍ଟଧୃଷ୍ଟଙ୍କୁ କହିବାର ପ୍ରଥମ ଦିନ ତୁମେ ଅବହେଳିତ ହେଇଥିଲ ବୋଲି । ଏଠାରେ ସମସ୍ତେ ତୁମର ପ୍ରଶଂସା କରୁଛନ୍ତି । ମନ୍ତ୍ରୀ ତ ସବୁ ମଧ୍ୟ ବହୁତ ଖୁସି ସହଜରେ ତୁମେ ଏଭଳି ଅପୂର୍ବ କାର୍ଯ୍ୟରତ ଅଦୃଷ୍ଟ । ମୁଁ ତୁମକୁ ଏକ ହଜାର ସ୍ୱର୍ଣ୍ଣମୁଦ୍ରା ଦେଇ ସମ୍ମାନିତ କରୁଅଛୁ ।

ରାଜା ଏହା କହି ଭଣ୍ଡାରିକୁ ଆଦେଶ ଦେଲେ । ସଙ୍ଗେ ସଙ୍ଗେ ଏକ ଥଳିରେ ମୁଦ୍ରାଗୁଡ଼ିକ ଆସି କବିଙ୍କ ପାଖରେ ପହଞ୍ଚିଗଲା ।

ରାଜା ଆହୁରି କହିଲେ—

ଶୁଣ କବି ଆଉ ଏକ ଘୋଡ଼ା ମଧ୍ୟ ଦାନ କରୁଛୁ ତୁମେ ତାର ଉପରେ ବସି ଅନ୍ୟାନ୍ୟ ସ୍ଥାନକୁ ଯିବ । ଆଉ ଯିବା ପୂର୍ବରୁ ତୁମର ସ୍ମୃତି ରକ୍ଷା ଲାଗି କହୁ ତଳପଟ ଅଳ୍ପ ନାମରେ ଉଚ୍ଚାରଣ ଦେଇଯିବ । ତାହା ତୁମର ଜୀବତାପିକ ପର୍ଯ୍ୟଟନର ସ୍ମାରକୀ ହେଇ ସବୁଦିନ ପାଇଁ ଏଠାରେ ରହିବ ।

କବି ଟଙ୍କାଥଳି ଓ ଘୋଡ଼ାଟିଏ ପାଇ ଖୁସି ହେଇ କହିଲେ— ସାମାନ୍ୟ କଥା ମାତ୍ର ଏଏ । ତାଙ୍କ ରାଜାଙ୍କୁ ପ୍ରଣମ ଭେଟି ଦର- ବାରରେ ତଳପଟ ପହଞ୍ଚାଇ ଦେବ ।

ହାତ ଫେରିଲେ । ରାଜାଙ୍କୁ ଅପମାନର ପ୍ରତିଶୋଧ ନେଇବ ନେବେ ବୋଲି ମନ କରି ବଣରୁ ପୁଣିଏ ଛାଳ ଫଳ ତୋଳି ତାକୁ ପୁରସ୍କୃତ ସମୟରେ ପ୍ରସ୍ତୁତ ହେଉଥିବା ସୁଖଜଣ ଅଗ୍ନିସ୍ତ ଚଉପଡ ଗଢ଼ିଲେ । ଗୋଟିଏ ବଡ଼ ଝୁଡ଼ିରେ ବୋଝେଇ କଲେ ଓ ଘରେ ମଠା ସ୍ୱବରଟିଏ ଯତ୍ନରେ ଢାଙ୍କି ରଖି ନିଜର ଅଭ୍ୟର୍ଥନା ପାଇ ନେଲେ । ଦରବାର ଲାଗିବାର ପ୍ରଥମରେ ଯେଉ ଝୁଡ଼ିକୁ ନେଇ ମୁଣ୍ଡାଇ କରିବାରେ ଉପସ୍ଥିତ ହେଇ ରାଜାଙ୍କ ସମ୍ମୁଖରେ ଝୁଡ଼ିକୁ ବହୁ କଷ୍ଟରେ ମୁଣ୍ଡରୁ ଓହ୍ଲାଇ ତଳେ ରଖିଲେ ।

ରାଜା ଓ ସଭାସଦ ବିସ୍ମିତ ଓ ଆଶ୍ଚର୍ଯ୍ୟ ହେଇ ଚାହିଁଲେ ।

—ଏତେ ମହାପାତ୍ରେ ଏତେ ବଡ଼ ଝୁଡ଼ିରେ କ'ଣ-ଆଣିଛ ।

ଦୀର୍ଘ ନିଶ୍ୱାସ ଛାଡ଼ି ଯଦୁମଣି କହିଲେ

—ଆଜ୍ଞା ବହୁତ କଷ୍ଟରେ ସଖାଳୁ ଲାଗିଛି···ଶ୍ରୀମୁଖଙ୍କ ଆଦେଶ ଯେତେବେଳେ ନ ପାଳିବ କିପରି । ସବୁ ଆଜ୍ଞା ବଲ୍‌ଭୁଲ୍ ତିଳକ ଚଉପଡ । ମୁଁ ନିଜେ ରଚନା କରିଛି ।

ତନ୍ଦ୍ରଦୋଣ ଅଗ୍ନିଷ୍ଟାମା
ଶାଳ ଫଳ ସମାଯୁକ୍ତ
ନାରିକେଳ ଶିଖଭଞ୍ଜା
ବହୁ ସଂଖ୍ୟା ପ୍ରକତମ ।

ସଗୁଣାନ ଭକ୍ତଯୁକ୍ତା
କାଳେନ ଶୁଦ୍ଧ ଭବନ୍ତୁ

ପଦ୍ମମଣି ବୃତ୍ୟା ଭକ୍ତ
ତସ୍ମ ତନ୍ତୁପଣ ତଥା ।

ଅର୍ଥାତ୍ କବି କହିଲେ ସ୍ୱର୍ଣକୋଣଯୁକ୍ତ ତନ୍ତ୍ରସବ ଖାଳପଞ୍ଚ ଓ ନଡ଼ିଆ ପିଣ୍ଡ ଦେଇ ସ୍ୱହସ୍ତକାର ଗଢ଼ିଲ ଆପଣଙ୍କ ଗୁଣଗର ଭକ୍ତଶ୍ରୁତ ପଦ୍ମମଣିର ସ୍ମୃତି ସବୁଦିନ ପାଇଁ । ଏହା କହି ମଠା ସ୍ୱବନ୍ଧ କରିଦେଲେ । ସଭାସଦ ଲୋକେ ହୋ ହୋ ହୋଇ ହସି ଉଠିଲେ ।

ରାଜା ଅପମାନିତ ହେଲେ । ତନ୍ତୁପଣର ଅର୍ଥ କେବେ ଏପରି ମଧ୍ୟ ହୋଇଛି ? ପ୍ରଥମେ ରାଗିଗଲେ ପରେ ହସିଲେ । କାରଣ ହାସ୍ୟରସ ପରିବେଷଣ ନିପୁଣ ପଦ୍ମମଣି ଏଇଟା ତାଙ୍କର ଠକାମି ଠିକ୍ କରି ଦେଇନାହିଁ ।

ରାଜା କହିଲେ—

—ପଦ୍ମମଣି, ତୁମେ କଣ ବୋଲି ପଦ୍ୟ ରଚନା କରିବାକୁ ମୁଁ କହିଥିଲି । ତୁମେ ହାସ୍ୟରସର ପାହାଡ଼ ଆଣିଛ ଶ୍ଳୀଳ ପଦରେ ବର୍ଣ୍ଣନ କର ? ଅନ୍ୟକୁ କେଉଁ ଠକାଇ ଦେଲ । ବୁଝିଲି ତୁମର ପ୍ରଥମଦିନ ଅବହେଳାର ପ୍ରତିଶୋଧ ଏ । ଠିକ୍ ଅଛି । ତୁମର ଏଇ ହାସ୍ୟ ରସର ଉପହାର ଏ ସ୍ୱର୍ଣ୍ଣ ଫଳକ ମୁଁ ଦେଉଛି । ସବୁଦିନ ପାଇଁ ତୁମର ଏମିତି ଉପହାସରେ ପଦ୍ମମଣି ତନ୍ତୁପଣ ହୋଇ ରହିଯିବ ?

ଯଦୁମଣି ସମସ୍ତ ଦେଖି ଫେରିଲେ । ଶରବନ ନାମାଙ୍କିତ ସ୍ୱର୍ଣ୍ଣ ଫଳକଟିଏ ପାଇବା ପରେ ସହରେ ସୁନ୍ଦର ଚଳ୍ପତି ଭଳ ରାଜାଙ୍କୁ ଭେଟି ଦେଇ ସ୍ୱଦେଶକୁ ସସମ୍ମାନେ ପ୍ରତ୍ୟାବର୍ତ୍ତନ କଲେ ।

●

## ଯଦୁମଣିଙ୍କ ଶୀତ କମଳ

ଜଣ ଯଦୁମଣି ପରଦୁଃଖ ଦେଖି ପାରନ୍ତି ନାହିଁ । ଦେଖୁ ଦୁଇଷ୍ଣ ଦେଇ ତାଙ୍କୁ ଭିକ୍ଷା ମାଗିଲେ ସେ ଖୁସି ହୋଇ ନିଜର ମୂଲ୍ୟବାନ ପଦାର୍ଥମାନ ଦେଇ ଦିଅନ୍ତି ।

ଥରେ ଘୋର ଶୀତ ପଡ଼ିଥାଏ ମାଘ ମାସରେ । ଗ୍ରାମର ଗରିବଶ୍ରେଣୀ ଲୋକ ଶୀତରେ ଥରୁଥାନ୍ତି । ଏହା ଦ୍ରାପ୍ ସମସ୍ତଙ୍କୁ ଶୀତ ରକ୍ଷା ନିମନ୍ତେ ଦରକାର ଯାହା ଥିଲ ଓ ଧନ ପଇସା ନେଇ ବଜାରରୁ ଶୀତ ଲୁଗା କିଣି ବାଣ୍ଟିଦେଲେ, ଶେଷକୁ ଏପରି ହେଲା ଯେ ସେ ନିଜ ଓ ସ୍ତ୍ରୀ ଶୀତରେ ଥରି ଥରି ଧାନ ଦେଁସ ବୋଢ଼ାଇ ହେଲେ । ଯଦୁମଣିଙ୍କ ଉପରେ ଅପଥ୍ୟ ଖସରେ ବୁଢ଼ଣୀ ଗାଳି ଦେବାକୁ ଲାଗିଲେ ।

ଭକ୍ତ କଣ କହନ୍ତେ । ନିଜର ସୁଖକୁ ଭୁଲିଲେ ଅନ୍ୟର ଦୁଃଖ ମୋଚନ କରିବେ କିପରି ।

ସେଦିନ ମହନ୍ତା ତାଙ୍କର ଭଲ ନଥାଏ । ସେ ରାଜସଭାରେ ଉପସ୍ଥିତ ହେଲେ ସନ୍ଧ୍ୟାରେ । ବାଟରେ ବିଳମ୍ବ ହୋଇଗଲା ।

ରାଜସଭାରେ ପହଞ୍ଚି ବସିବା ମାତ୍ରେ ରାଜା ତାଙ୍କୁ ପୁଚ୍ଛି କହିଲେ—

—ତମ ଭାଗ୍ୟରେ କଣ ଆଜି ବିଳମ୍ବରେ ଓ ମନଦୁଃଖରେ ଆସିଛନ୍ତି ଦେଖୁଛି । କଥା କଣ ।

ଭକ୍ତ କହିଲେ—

ପ୍ରସୂତ ଭୁଞ୍ଜଇ ପ୍ରସୂତ ଦୁଃଖ
ବାଞ୍ଝା ନ ଜାଣଇ ଗର୍ଭର ଖେଦ ।
ଶୀତରେ ଭାତର ନଗର ଲୋକ
ଜନ ଦୁଃଖ ଆଉ ଅସନ୍ତ ଶୋଷ ।
ଯାହାଥିଲା ଦେଇ ସଭିଙ୍କୁ ବାଣ୍ଟି
ଥିଲି ଏ ଦୁଃଖନ୍ତ ଶୀତରେ ବାଣ୍ଟି ।
ବୁଢ଼ଣୀ ବୋଉଣୀ ମନ୍ଦୁଆ ଓରା
ଶାଳ ବଲ୍କଳ ଶ୍ରାବଣ ଧାର ।

ରାଜା ହସି ହସି କହିଲେ—

—ସେବେ ରାଜାଙ୍କୁ ଜଣାଇବାକୁ ସାହାସ ପାଉନାହାନ୍ତି । ତୁମକୁ ଡକୁଛନ୍ତି । ଏବେ ନଗର ଭୁଲ ଗଣ୍ଠବଙ୍କର ବ୍ୟବସ୍ଥା ହାସ୍ତିର ତୁମକୁ ଦେଲ । ଏହାଛଡ଼ା ତୁମର ସେ ବନ୍ଧ ଉପର ଉଣ୍ଡ ବଣ ତୁଳାଉ ଷୋଡ଼ଶୀ ତୁମ ଗୃହିଣୀଙ୍କ ସଙ୍ଗେ ପହଞ୍ଚିବ ।

---

# କବି ଯଦୁମଣିଙ୍କର ବନ୍ଧୁ ପ୍ରୀତି

କବି ଯଦୁମଣିଙ୍କର ବନ୍ଧୁପ୍ରୀତିର ତୁଳନା ନଥିଲା । ଦୂର ଦୂରାନ୍ତ ଠାରୁ ନିକଟ ସ୍ଥାନ ପର୍ଯ୍ୟନ୍ତ ବହୁ ଧନୀ ମାନୀ ରାଜା ମହାରାଜା ଓ ପଣ୍ଡିତମାନେ କବିଙ୍କର ବନ୍ଧୁ ହୋଇଥିଲେ ।

ବନ ବଇଦ୍ୟ ମଧ୍ୟ ତାଙ୍କର ଅତି ପ୍ରିୟ ଥିଲେ । ଥରେ ଗୋଟିଏ ଜମିଦାର ଘରକୁ ଭୋଜନ ଲାଗି କବିଙ୍କୁ ନିମନ୍ତ୍ରଣ ହେଲା ।

କବି ସେଠାରେ ଯଥା ସମୟରେ ଉପସ୍ଥିତ ହେଲେ ଜମିଦାର ଓ କବି ଭୋଜନରେ ବସିଲେ । ତରେ ଜମିଦାରଙ୍କ ପତ୍ନୀ ଆସିଲେ ପରିବେଷଣରେ ।

ହରଡ଼ ଡାଲି ଭଜଣା ଓ ପାଣି ପୋଟଳା । ମାଛ ଝୋଳ ଆଉଁଷିଆ ଭାତ ।

ଭକ୍ତ କହିଲେ—

—ଆହା ଚମତ୍କାର ଗୃହିଣୀ ହାତ
ହରଡ଼ ଶୁଙ୍ଗରେ ଜଳ ସ୍ରାପତ
ମୂଢ଼ ମୁଣ୍ଡ ହୁଏ ହରଡ଼ ଯାଇ
ଗୁଣ୍ଡ ଗୁଣ୍ଡ ଖାଲି ଚୂଲରେ ହୋଇ ।
ଝୋଳରେ କେସଣ୍ଡି ମାଛର ଭଆଁ
ମଣ୍ଡିତ ହୋଇ ଲାଗିବ ଜଆଁ
ଭରଣୀ ଘରଣୀ ହେଲେ ଯା ଆଶି
ଅପୂର୍ବ ବ୍ୟଞ୍ଜନ ଅପୂର୍ବ ରାଶି ।

ଭକ୍ତଙ୍କ କଥାରେ ସ୍ୱାମୀ ସ୍ତ୍ରୀ ଲଜ୍ଜିତ ହେଲେ ଏବଂ ସୁନ୍ଦର ଧର୍ମାଲୋଚନାରେ ଆନନ୍ଦ ହେଲେ ମଧ୍ୟ । ଭକ୍ତଙ୍କୁ ଅଟକାଇ ସ୍ୱତନ୍ତ୍ର ସର୍ବ ଭୋଜନର ବ୍ୟବସ୍ଥା ସୁଷ୍ଠୁ ରୂପେ କରୁଥିଲେ ।

ବନ୍ଧୁ ପ୍ରୀତି ଭକ୍ତ ବନ୍ଧୁ ଆଲୋଚନା କରି ସମସ୍ତ ପରିବାରଟିକୁ ଆନନ୍ଦ ମୁଖର କରିଥିଲେ ।

●

# ଖଣ୍ଡପଡ଼ା ରାଜା ଓ ପଦ୍ମମଣି

ଗୁଣୀଜନର ପ୍ରକାଶ ଥିଲେ ନୟାଗଡ଼ର ରାଜା । ସେ ଦୁଃଖି ଲୋକଙ୍କୁ ସାହାଯ୍ୟ କରି ପୁଣ୍ୟର ପ୍ରକାଶ କରୁଥିଲେ ।

କିନ୍ତୁ ପଦ୍ମମଣିଙ୍କ ଜୀବନଯାତ୍ରା ପଥରେ ନୟାଗଡ଼ ରାଜା ଉଚ୍ଚଃସ୍ରୋତ ସ୍ୱରରେ ସ୍ମରଣୀୟ । ତାଙ୍କର ଦାନ ସାହାଯ୍ୟ ପ୍ରେରଣା ଜନଙ୍କୁ ଉଚ୍ଚରୁ ଉଚ୍ଚ ଆସନକୁ ନେଇଯାଉଥିଲା ।

ପଦ୍ମମଣି ସ୍ୱାଧୀନ ଭାବରେ ସ୍ୱେଚ୍ଛା ଗମନ କରିପାରୁଥିଲେ । ବନବିହାର ବନ୍ଧୁସଙ୍ଗ ଆଉ ରାଜ୍ୟ ଭ୍ରମଣ ମଧ୍ୟ କରୁଥିଲେ । ରାଜା ବୃଦ୍ଧ ଥିଲେ ଧନଙ୍କର ମନରେ ରାଜ୍ୟର ଗୌରବ ।

ଥରେ ପଦ୍ମମଣି ମନ ପରିବର୍ତ୍ତନ କରିବାକୁ ବନପଥରେ ଅନ୍ୟ ଏକ ରାଜ୍ୟକୁ ଘୋଡ଼ାରେ ଚାଲି ଯାଉଥାନ୍ତି । ସେ ଭାବ ପ୍ରବଣତାରେ ନଦୀର ଗିରିପଥ ଜଙ୍ଗଲରେ ପଡ଼ିଗଲେ । ହଠାତ୍ ତାଙ୍କର ଚେତନା ଉଦ୍ରେକ ହେଲା ସେ ଲକ୍ଷ୍ୟଚ୍ୟୁତ ହୋଇପଡ଼ିଲେ । କାରଣ ସେହି ମହାବନ ବାଘ ସେ ବଣରେ ରହନ୍ତି । ତାଙ୍କ ଏଣେତେଣେ ବୁଲିଲେ ଅଳ୍ପସମୟ ପରେ ସନ୍ଧ୍ୟା ହୋଇଯିବ । କେହି ଶବର ଧନୁଶର ଧରି ଆସୁଥିଲେ ତାକୁ ସାଥି ଧରିନେବେ ବୋଲି ଲୁଣ୍ଠନକାରୀଙ୍କୁ ଭାବିଲେ ।

ଏମିତି ଚିନ୍ତାମଗ୍ନ ବେଳେ ଅଦୂରରୁ ଘୋଡ଼ାର ଟାପୁର ଶବ୍ଦ ଭାସି ଆସିଲା ।

ପଦ୍ମମଣି ଆତ୍ମରକ୍ଷା ଲାଗି ଏକ ଭରସା ପାଇଲେ । ଅପେକ୍ଷା କଲେ ଶବ୍ଦ ଆସୁଥିବା ଦିଗକୁ । କ୍ରମେ ଘୋଡ଼ାର ଗତି ନିକଟରୁ ନିକଟତର ହେଲା ।

ଯୋଗକୁ ରଣପୁର ରାଜା ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ସିଂହ ମର୍ଦ୍ଦରାଜ ଭ୍ରମରବର ରାୟ ସବାର ହୋଇ ସେହି ଦିଗରୁ ଆସୁଥିଲେ ।

ରଣପୁର ରାଜା ଖୁବ୍ ବିଳାସୀ ଓ ସୌଖିନ ଥିଲେ ସେତେବେଳେ ଶିକାର କରିବାକୁ ବନପଥରେ ବୁଲି ବୁଲି ଫେରୁଥାନ୍ତି ।

ରାଜା ନିକଟ ହେଲେ । ପଦ୍ମମଣିକୁ ଚିହ୍ନି ପାରି ଘୋଡ଼ା ଠିଆକଲେ ।

ପଦ୍ମମଣି ମହାପାତ୍ରେ ତୁମେ ଅସ୍ତ୍ର ଶସ୍ତ୍ର ହସ୍ତରେ ଏତେ-ବେଳେ ଗଭୀର ଅରଣ୍ୟରେ ଯେ କଥା କ’ଣ ?

—ରାଜ ଅଭିବାଦନ ଜଣାଇଲେ—

ନୀଳମାଧବ ନିଳୟ ଧାମ
ଧାମ କ୍ଷେତ୍ରୀୟ କୁଳ କମଳାଙ୍କ
କୃଷ୍ଣ ଚନ୍ଦ୍ରାଙ୍କ କୃଷ୍ଣଶରଣ
ମର୍ଦ୍ଦରାଜ ଭ୍ରମରବର ରାୟ

ସବବ୍ରଜ ଧାମତମ୍ୟ ରମା ହୃଦକ
ଡାଟଭ ଶଙ୍କା ଅଙ୍କୁସଏ
ପାଦୁକା ଭନୀବନ୍ତ ତନ ସୋଡ଼ଭ ।

ଅର୍ଥାତ୍ ପ୍ରଭୁଙ୍କର ପାଦୁକା ଦେବଯୋଗ୍ୟ । ତୁଳୀ ଦୁଇଟି ଖଡ଼ମ ପର । ଲକ୍ଷ୍ମୀଙ୍କ ହୃଦତାଟଭ ପନ୍ନ ଶୋଭା ପାଉଛି । ଅଦ୍ଭୁତ ଭଣ୍ଟଲେ !

—ଭୂଷଣ ପ୍ରଶସ୍ତି ଭନ୍ତ ନାସ୍ତି ଗସ୍ତି ଧବଅଙ୍ଗ ଅବଙ୍ଗ ଲୁନକଭୂଳଣ ଘଭ ଘଳବନ୍ତ ପବାଭ ପଅଚନ୍ତୁସଞା ।

—ହେ ଏମନ୍ତ ମହାତ୍ମା, ଆମ୍ଭେ ବନ ଭ୍ରମଣରେ ଆସି ପ୍ରଥବଣା ଦେଉଛୁ । ଅପଣଙ୍କ ବୋଡ଼ା ଟାପୁ ଶୁଣି ଅପେକ୍ଷା କରୁଛୁ । ରାଜା ସନ୍ତୋଷ ହେଇ ପାରିଷଦଙ୍କୁ କହିଲେ ହାଓ ଉପରେ ବସାଇ ଭଦଙ୍କୁ ନେଇଯିବ ଆମ ରାଜଧାନୀକୁ । କାଲି ନସ୍ତ୍ୟାଗଡ଼କୁ ଫେରିବାର ବ୍ୟବସ୍ଥା କରିବା ।

ଭଢ ଜଗନ୍ନାଥଙ୍କୁ ମନେ ମନେ ଅଶେଷ ଧନ୍ୟବାଦ ଦେଲେ । ମନଖୁସିରେ ରଣପୁର ରାଜା ହାଓରେ ବସି ଦୁର ଝରଣା ନଭଟରେ ପୂର୍ବରୁ ପ୍ରସ୍ତୁତ ହୋଇଥିବା ରାଜଧାନୀରେ ଯାଇ ବିଶ୍ରାମ କଲେ ।

ବନ ବିହାର ଛଳରେ ହାସ୍ୟରସ ପ୍ରେମୀ ସଦ୍ମଣି ମିଳ-ସିବାରୁ ବହୁତ ଖୁସି ହୋଇଥିଲେ ପାରିଷଦବର୍ଗ । ପରଦିନ ରାଜା ଉପାହାରାଦି ପ୍ରଦାନ କରି ଜନପଥରେ ପହଞ୍ଚାଇ ଦେବାର ବ୍ୟବସ୍ଥା କରି ଦେଇଥିଲେ ।

—*—

# ଆନନ୍ଦ ମହାଯଜ୍ଞ

ରସିକ ଶିରୋମଣି ପଦ୍ମମଣି ପ୍ରତିବର୍ଷ ଗୋଟିଏ କରି ନୂଆ ଉତ୍ସବ କରି ବନ୍ଧୁବାନ୍ଧବ ଓ ଆତ୍ମୀୟସ୍ୱଜନ ଭଦ୍ରଲୋକଙ୍କୁ ଘର ପାଖରେ ଏକତ୍ର କରନ୍ତି । ବେଶ ଭୋଜ ଭାତର ବନ୍ଦୋବସ୍ତ ହୋଇଥାଏ । ସମସ୍ତଙ୍କୁ ଭାରି ହାସ୍ୟରସରେ ସମସ୍ତଙ୍କୁ ଆନନ୍ଦ ଦେବା ସଙ୍ଗେ ନିଜେ ମଧ୍ୟ ବହୁତ ସୁଖ ଅନୁଭବ କରନ୍ତି ।

ସେଥର ପଦ୍ମମଣି ନିଜର ହୋମ୍ଭିପଥ ବନ୍ଧୁର କଥା ଘରେ ସ୍ତ୍ରୀଙ୍କୁ କହିଲେ ମୋର ମହାବଣା ଘଡ଼ିଗଲା । ସବୁ ରୋଗମାନେ ମେଣ୍ଟ ହେଲେଣି, ତୁଏତ ଆଉ କଷ୍ଟ ନାହିଁ ।

ସ୍ତ୍ରୀ ଲୋକମାନେ ଯେତେ ମୂର୍ଖ ହେଲେ ମଧ୍ୟ ନିଜର ସ୍ୱାମୀଙ୍କର ମଙ୍ଗଳ ଚାହାନ୍ତି । ତେଣୁ ସେ କାନ୍ଦ ପକାଇଲେ ।

ପଦ୍ମମଣି ସାନ୍ତ୍ୱନା ଦେଇ କହିଲେ—

ବ୍ୟସ୍ତ ହୁଅନ, ରୋଗ ଶାନ୍ତି ଲାଗି ଓ ଦୁଃଖରୁ ରକ୍ଷା ଲାଗି ପ୍ରତିକାର ସ୍ୱରୂପ ଏକ ଆନନ୍ଦ ମହାଯଜ୍ଞ କରିବା ।

ପଇସା ଖରଚ କଥାରେ ସ୍ତ୍ରୀ ଅଧିକ ହୁଅନ୍ତି । କିନ୍ତୁ ରୋଗ ଝଗଡ଼ କଥା ଶୁଣି ସେ ଉତ୍ସାହ ହେଲେ । ଓଳଟି କହିଲେ—

ତୁମେ ଶୀଘ୍ର ବ୍ୟବସ୍ଥା କର ସ୍ୱାମୀ ତହଂ ମୁଁ ମୋର ବାପ ଘରକୁ ଯାଇ ବନ୍ଧୁ ସାହାଯ୍ୟ ଆଣିବ ।

ପଦ୍ମମଣି ହସିଦେଲେ । ତହିଁ ପରଦିନ ସେ ସମୟରେ ଗାଁ ମୁଣ୍ଡର ଠାକୁରାଣୀ ପାଖ ପଡ଼ିଆଟିକୁ ସ୍ଥାନ ନିର୍ବାଚନ କରି ପକାଇଲେ । ନଳଟବଣ୍ଠୀ ସବାଙ୍କୁ ମଧ୍ୟ ଜଣାଇ ଦେଲେ । ବାଦ୍ୟ, ନାଚ ତାମସା, ପୁରସ୍କାର, ଭୋଜିଭାତ ସବୁର ବରାଦ ସବୁ ଆଗେ ଆଗେ ହେବାକୁ ଲାଗିଲା । ଗ୍ରାମ ଲୋକେ ମାଗଣା ଖାଇପିଇ ମେଲିଲେ କାମରେ । ପଦ୍ମମଣି ଆନନ୍ଦରେ ନାଚ ନାଚ ପଡ଼ୁଥାନ୍ତି । ସତେ ଯେପରି ସ୍ୱର୍ଗ ଓହ୍ଲାଇ ଆସିଛି ପାଖକୁ ।

ନସ୍ୱାପତ୍ର ସ୍ୱଜା ଏକେ ସବଳବଳେ ଆସି ସହଯୋଗ କଲେ ।

ଯଜ୍ଞଟି ଖୁବ୍ ଆନନ୍ଦରେ ଶେଷ ହେଲା । ଯଜ୍ଞ ପରେ ପଣ୍ଡୁମିଶ୍ର ଓ ସାଙ୍ଗମାନଙ୍କ ପାଇଁ ଘରେ ଥରେ ଆଉ ଗୋଟିଏ ଭୋଜି ବ୍ୟବସ୍ଥା ହେଲା । ପଦ୍ମମଣିଙ୍କ ନନ୍ଦ ଶଳାଙ୍କ ପାଖରେ ବସି ଖାଉଥିଲେ । ସେ ଥଟ୍ଟା କରି କହିଲେ—

—କେବୋ ସଉଦା-ରାଣି ପଟ୍ଟବସ୍ତ୍ର ଚଉକାଶଟା ବ୍ୟଞ୍ଜନକୁ ନଷ୍ଟ କରିଦେଲା ।

ପଦ୍ମମଣି ଉତ୍ତର ଦେଲେ -

ଆରେ ଉପଟା ଟିଂଟା, ଲଟା ଉଳେ ନକଉ ଡଣ୍ଡା,

ମୋର ମାଉସ ତୋର ଭଉଣୀ

ଭଅଣେ ଦେଇ ଅଣ୍ଟ ଏ ଗାଣ୍ଠି
ସବୁ ହେଉଛନ୍ତି ଖଟା ॥

ଅର୍ଥାତ୍ ରେ ଟାଉକା—ଙ୍କୁ ଯେଉଁ ଶୋଉନାହିଁ ଛନେ ବସିଛୁ । ଉଠ ଉଠ ହେଉଛୁ—ତୋ ଭଉଣୀ ତ ମୋର ସ୍ତ୍ରୀ । ତାହାକୁ ଅପ୍ରସ୍ତୁତ କରୁଛୁ ।

କଥ ଏପରି କଥା ଶାଳକଙ୍କୁ ଅପ୍ରସ୍ତୁତ କରିବା କଥାକୁ ଚଳାଇ ନେଲେ ।

●

## ଯଦୁମଣିଙ୍କ ଶାଳୀ ପ୍ରେମ

ରସିକ ଯଦୁମଣି ଖାଲି ରସିକ ଓ ବିଦୂଷକ ନଥିଲେ ପ୍ରେମିକ ଥିଲେ ।

ସେ ଥରେ ଶ୍ୱଶୁର ଘରକୁ ଯାଇଥିଲେ ବୁଲିବାକୁ । ତାଙ୍କର ସବା ସାନଶାଳୀଟି ଖୁବ ସୁନ୍ଦରୀ । ତାଙ୍କୁ ଭାରି ଭଲ ପାଆନ୍ତି । ସେ ଘରେ ବହୁ ଉପହାର ଦେଉଥାନ୍ତି । ଶାଳୀ ନବଯୌବନା ପ୍ରେମଶୀଳା । ତାଙ୍କୁ ସେ ମୁଗ୍ଧ କରନ୍ତି ।

ଶାଳୀର ବୟସର ଲାଗିବାରୁ ଶ୍ୱଶୁର ଶାଶୁ ତାକୁ ତାଗିଦ ଦେଇଥିଲେ ଯେ ଭଣେଇ ଏଥର ଆସିଲେ ସେ ତାଙ୍କୁ ଆସିବ ନାହିଁନ ଦେଖା ହେବ ନାହିଁ ।

ଯଦୁମଣି ଶ୍ୱଶୁର ଘରେ ପହଞ୍ଚି ସମସ୍ତଙ୍କର ଅଭ୍ୟର୍ଥନା ପାଇଲେ । କିନ୍ତୁ ଆଦରର ସାନ ଶାଳୀକୁ ଦେଖିବାକୁ ପାଇଲେ ନାହିଁ । ମନଟା ଫିକା ଲାଗୁଥିଲା । କାହାକୁ ପଚାରିବାକୁ ଲଜ୍ୟା ମନେ କଲେ ।

ଶ୍ୱଶୁର ଘରେ ଗୋଟିଏ ଧାଇ ଲୁହବଣୀ ଥିଲା । ତାଙ୍କ ଘର ସଫା କରି ଅଇଣା ଘଷ ପକାଇ ଦେଲା । ଯଦୁମଣି ଧାଇକୁ ପାଖକୁ ଡାକି ଏଣୁ ତେଣୁ କଥା ହେଇ ଶାଳୀ କଥା ପଚାରି ବୁଝିଲେ ଯେ ତାର ବାହାଘର ନିକଟରେ ତେଣୁ ଆକଟରେ ରହିଛି ।

ଯଦୁମଣି ଧାଇ ହାତରେ ପାଞ୍ଚଟି ଟଙ୍କା ଦେଇ କହିଲେ—

—ଏଇକ ନେ ତୋ ପିଲଙ୍କୁ ଦେବୁ । କାଇବା ରାତି ଶାଳୀକୁ ପଛପଟ ଢେଙ୍କିଶାଳ ପାଖକୁ ରାତିରେ ସମସ୍ତେ ଶୋଇବା ପରେ ପଠାଇ ଦେବୁ । ମୁଁ ତତେ ଆହୁରି ପାଞ୍ଚଟଙ୍କା ଦେବି । ଆଉ ଶାଳୀ ପାଇଁ ସୁନା ହାରଟିଏ ଆଣିଛି ତାକୁ ସେଇଠି ଦେବି ।

ଧାଇ ଖୁସି ହୋଇ ସମ୍ମତି ଜଣାଇ ଚାଲିଗଲା । ନିର୍ଦ୍ଦିଷ୍ଟ ସମୟରେ ଯଦୁମଣି ଯାଇ ଅପେକ୍ଷା କଲେ । ଧାଇ ଶାଳୀକୁ ଆଣି ଭେଟ କରାଇ ଦେଲେ ।

ଅପୂର୍ବ ସୁନ୍ଦରୀ ଲାବଣ୍ୟମୟୀ କଣ୍ଟକମଣି ଲାଜୁଣୀ ଭଙ୍ଗୀରେ ପ୍ରଣାମ କଲା । ଯଦୁମଣି ସୁନାହାରଟି ପିନ୍ଧାଇ କୋଳକୁ ନେଇ ପ୍ରେମ ଲୀଳା ଆରମ୍ଭ କଲେ । ସନମାନସୁ କବିଙ୍କୁ ସନ୍ତୁଷ୍ଟ କରାଇ କଣ୍ଟକମଣି ଚୁଲିଗଲା ଘରକୁ । ଯଦୁମଣି ସନ୍ତୋଷରେ ଯାଇ ନିଜ ଶଯ୍ୟାରେ ଶୋଇଲେ । ସକାଳୁ ଯଦୁମଣି ଘରକୁ ବାହାରିବା ପୂର୍ବରୁ ଶଶୁରଙ୍କୁ ଦେଖାକଲେ । ଖଣ୍ଡେ ଚିଠି ବଢ଼ାଇ ଦେଇ ଚାଲି ଆସିଲେ ଲେଖାଥିଲା—

କଣ୍ଟକମଣୀର ଆକଣ୍ଟ ଯା କଲେ
କଣ୍ଟକରେ ତାକୁ ମାରିଲି
ସୋଣ୍ଟକ ଶାଳରେ ଅଣ୍ଟାଇ ନେଇ
ଘଣ୍ଟାଇ ଗାମ ଧାରିଲି ।
ମଣିଷକୁ ପିନା ଅଣ୍ଟାଇଥିଲି
ଅଣ୍ଟକ ଘାରିକ ମନ
ପିଉଡର ଖଡ ଉମିତ ଜଗତେ
ଆପଣେ ହୁଏ ମିଳନ ।

ଶଶୁର ଚିଠି ପଢ଼ି ଗ୍ରାହଣ ଘରି ଯାଇଥିଲେ ସେତେବେଳକୁ କବି ସେଠାରୁ ବାହାରି ଆସିଥିଲେ ନିଜ ଘର ମୁଖରେ ।

# ଭାଗ୍ୟକୁ କହନ୍ତି ବାହାରିଯା

ଉଠାମାଟି ଗ୍ରାମରେ ଏକ ସଭା ଉତ୍ସବ ଖୁବ୍ ସମାରୋହରେ ହେଉଥାଏ । ବହୁଗ୍ରାମରୁ ଭଦ୍ରଲୋକମାନେ ନିମନ୍ତ୍ରିତ ହୋଇ ଆସିଥାନ୍ତି ।

କବି ସଦୁମଣି ନିମନ୍ତ୍ରଣ ପାଇ ସେଠାରେ ଉପସ୍ଥିତ ହୋଇଥିଲେ ।

କବିଙ୍କୁ ଉପସ୍ଥିତ ସମ୍ମାନ ଦେଇ ତାଙ୍କର ରହିବାର ବନ୍ଦୋବସ୍ତ କରାଇଦେଲେ । ଏକ ମଠର କୋଠା ଭିତରେ ଥିବା ମେହଲ ନିବାସ ଖଣ୍ଡିକ । ବହୁ ଲୋକ ସେଠାରେ ଭିଡ଼ ଜମାଇ କବିଙ୍କୁ ବହୁତ ପ୍ରଶ୍ନ କରି ବସ ଖୁସି ହେଲେ । ଯାହାର ଯାହା ପ୍ରଶ୍ନ ତାକୁ ଯୁକ୍ତି ଓ ତର୍କ ଦ୍ୱାରା ତାହାକୁ ପରିହାସ ଦ୍ୱାରା ସନ୍ତୁଷ୍ଟ କରାଇଥିଲେ ।

ଶେଷରେ କେତେକ ଉଦ୍‌ଯୋଗୀ ଲୋକ ଆସି ସଦୁମଣିଙ୍କ ପାଖରେ ଆପତ୍ତି କଲେ—

ପଣ୍ଡିତ ମହାଶୟ । ଏହି ଗ୍ରାମର ମୁଖ୍ୟ ସାଧୁ ଧର୍ମଲୋକ ମହାଜନ କରୁଛନ୍ତି । ଗ୍ରାମ ଶ୍ରଦ୍ଧା କେବଳ ଏ ଏଠାକୁ ତାଙ୍କର ଦେବ ଆସୁନାହାନ୍ତି ।

ପଦ୍ମମଣି ଏକଥା ଶୁଣି ନୂଆ ସାଧୁଙ୍କୁ ଡ଼କାଇ ପଠାଇଲେ । ସେ ପାରିଷଦଙ୍କ ଡାକରାକୁ କିଏ ବା ଅବମାନନା କରିବ ? ନୂଆ ସାଧୁ ଆସି ପ୍ରଣାମ ହେଲା । ସେତେବେଳେ ପଦ୍ମମଣି ଦୁଏତ କହୁ ସଜଡଣ୍ଡ ନସୁ କହିବେ ।

ପଦ୍ମମଣି ପରିହାସ କରି କହିଲେ—

—କହୋ ନୂଆ ସାଧୁ ?

ଜାତରେ ତେଲି; ମନ୍ଥାଅ କତ ଘଣାକୁ ଗେଲି ।

ବେଳକୁ ଦରବ ଟିକିଏ ମନ

ମୂରୁଖ ଘଣକୁ ହୋଇଛ ବୋଳ ।

ଆତୁର କହିଲେ—

ଘୃଣାରେ ଖାଦକଅ

ଜାତ ଘୃତ ଦକଡଅ

ଘଣଯାକୁ ବୋଲେ ତୁ ଘଣ ଯା

ଦେଖ ମଦ ଡଳଇଅ ।

ଅର୍ଥାତ୍ ଘଣା ଟଣା ଚଳତ ତୁମେ । କୃପଣ ଧନ ଲାଗି ନଜର ସ୍ତ୍ରୀକୁ ଘରକୁ ଦିଏ । ମନ ତ୍ୟାଗ କରି ଘଣକୁ ଅନାଏ । ଦଳରେ ଧନ ତୋ ବୋଷାର ନୁହେଁ । ରାଜ୍ୟର ସମସ୍ତ ଧନ ରାଜାଙ୍କର । ତୁମେ ଗ୍ରାମକୁ ସାହାଯ୍ୟ କରିବନତ ଧର୍ମ ହେଲ ରତ୍ନ ପାରିବ ନାହିଁ ।

ଏକଥା ଶୁଣି ମୁଖ ସାହୁ ଲଜ୍ଜିତ ଓ ଅପମାନିତ ହୋଇ କାକୁତି ମିନତି ହେଲା । ରାଜାଙ୍କୁ ନ ଜଣାଇବାକୁ ତାଙ୍କୁ ଘରକୁ ନେଇ ସିନ୍ଦୂର ପିନ୍ଧାଇଲା ଓ କେତୋଟି ମୋହର ବାହାର କରି ତାଙ୍କୁ ଦେବା ସହିତ ଗ୍ରାମ ଉତ୍ସବକୁ ସହସ୍ର ମୁଦ୍ରା ଚାନ୍ଦି ଦେଲା ।

ଏସବୁ ଦେଖି ଗ୍ରାମ ଲୋକେ ଯଦୁମଣିଙ୍କୁ ଧନ୍ୟବାଦ ଜଣାଇଲେ । ତାଙ୍କର ଚତୁର ବୁଦ୍ଧି ଓ କାର୍ଯ୍ୟ ସାହାସର ବହୁ ଗୁଣ ଥିଲା ।

—*—

## ପ୍ରଭୁ ମହିମା ମେଳୁ

ସୁପରିଚିତ ଠାକୁର ଖଣ୍ଡପଡ଼ାରେ ହେଲେ ପ୍ରଭୁ ମହିମା ମେଳୁ । ଆଦିବାସୀଙ୍କ ଠାକୁର ଥିଲେ । ବହୁତ ମାନନ୍ତି ତାଙ୍କୁ ଆଜି ମଧ୍ୟ ପ୍ରତିଷ୍ଠିତ ଅଛନ୍ତି ।

ପ୍ରଥମେ ସେଠାରେ ଗଭୀର ଜଙ୍ଗଲ ଥିଲା । ଆଦିବାସୀମାନେ ପୂଜା କରୁଥିଲେ । ଧୀମନ୍ତେ ମେଳ ହେଇ ସଭାଙ୍କୁ ଜଣାଇଲେ

ମନ୍ଦିରଟିଏ ତୋଳାଇ ଠାକୁରଙ୍କୁ ପ୍ରତିଷ୍ଠା ସେବକ ଓ ପୂଜା ନିତ୍ୟାଦିର ବନ୍ଦୋବସ୍ତ କରିବାକୁ ।

ଧର୍ମପରାୟଣ ଓ ପ୍ରଜାବତ୍ସଳ ରାଜା ଏହିମତ ବୋଲି କହି ବଣଜଙ୍ଗଲ ସଫାକରାଇ ସେଠାକୁ ଏକ କରାଇଲେ । ଅସ୍ଥାନ ପୀଠ ମନ୍ଦିର ତୋଳି ପୂଜକ ସେବାୟତ ନିଯୋଗ କରାଇ ପ୍ରତିଷ୍ଠାର ଦିନ ବାର ଠିକ୍ କରିଥିଲେ ।

ଏହି ଠାକୁର ଝଣ୍ଡପଡ଼ା ମଧ୍ୟ ଜଙ୍ଗଲରେ ଅବସ୍ଥିତ । ଯଦୁମଣି ନିମନ୍ତ୍ରିତ ହୋଇଥିଲେ ପ୍ରତିଷ୍ଠା ଉତ୍ସବକୁ । ମହିମା ମେହୁଙ୍କର ଶ୍ଳୋକ ଲାଗି ପ୍ରଥମକରି ବଳିଭ ମୁଁଆ ବେଶର ଗୀତ ପ୍ରଣୟନ ହେଲା । ସେହି ମୁଆଁ ପରବ ଉତ୍ସବରେ ପ୍ରସ୍ତୁତ ହେଲା ମଧ୍ୟ ।

ଉତ୍ସବ ପରେ ରାଜା ଧନ୍ୟ ଯଦୁମଣିଙ୍କୁ ପାଖକୁ ଡାକାଇ ପଚାରିଲେ —

—ଶୁଣ ପଣ୍ଡିତେ ! ତୁମେ ବହୁରାଜ୍ୟ ବୁଲିଲଣି । ଅନ୍ୟ ରାଜ୍ୟ ଏପରି ନାମରେ ଠାକୁର ନଥିବେ । ଏଠାରେ ପ୍ରଭୁ ମହିମାମେହୁ ନାମଟା କିପରି ଲାଗୁଛି ।

ଯଦୁମଣି କବିର ଛଟାରେ କହିଲେ—
ପ୍ରଭୁଙ୍କ ମହିମା ଅପାର ଜଗତେ
ଲିଖିବେ କବିଙ୍କି ନା ।

ସଭଙ୍କ ଭିତରେ ରହିଅଛନ୍ତି ସେହି
ନିର୍ଗୁଣ ପରମ ବ୍ରହ୍ମ ।

ଅଭାଗିଆ ହେଲେ ଲୋକଟା ଏମିତି
ଲିଆ ମୁଆଁ ମିଶି ଖାଇ

ଲିଆଁ ଲିଆଁ ମିଶି ମଣ୍ଡା ମୁଆଁ ଏ
ମଣ୍ଡା ଜଣ ମୁହଁର ॥

ଭକ୍ତଙ୍କ କଥାରେ ଖୁସି ହୋଇ ରଜା ଲୋକଙ୍କ ଦେଳକୁ ତାଙ୍କ ଜିଲାର ପାଙ୍କରେ ଠାକୁରଙ୍କ ପ୍ରସାଦ ଖୁଆଇଥିଲେ ।

—•—

## ବାରଙ୍ଗନାର ଉପଦେଶ

ଏବେ ପଦ୍ମମଣି ଗାର୍ହସ୍ଥ୍ୟ ଅଶାନ୍ତି ପ୍ରାପ୍ତ ହେଉଥିଲେ । କାରଣ ତାଙ୍କର ଘର ଓ ବାହାର ଦୁଷ୍ଟାଚରଣ କରୁଥିଲେ ତାଙ୍କ ସ୍ତ୍ରୀ ।

ପଦ୍ମମଣି ଥରେ ଭୀଷଣ ଅସନ୍ତୁଷ୍ଟ ହୋଇ ଘରରୁ ବାହାରି ସହରକୁ ପଳାଇ ଗଲେ । ଗୋଟିଏ ଘରଭଡ଼ା ନେଇ ରହିଲେ । ମନଟା ତଥାପି ଶାନ୍ତ ହେଉନ । ନିକଟରେ ଜଣେ ସ୍ୱାଧିକା

ବାରଙ୍ଗନା କୋଠି ଦେଖିଲେ । ବାରଙ୍ଗନା ଗୃହ ଭବନକୁ ନୃତ୍ୟ ଗୀତ କରିବାକୁ ଉତ୍ସବ ଆସରେ ଯାଏ । ଅତ୍ୟନ୍ତ ସୁନ୍ଦର ସୁସଜ୍ଜ । ପଦ ମାନସିକ ପରିବର୍ତ୍ତନ ଲାଗି ଭିତରକୁ ଗଲେ ।

ରୂପସୀ ବାରଙ୍ଗନା ତାଙ୍କୁ ଦେଖି ପ୍ରଣାମ କରି ଅଭ୍ୟର୍ଥନା କରି ସମାଦରରେ ନେଇ, ଆସିବାର କାରଣ ପଚାରିଲା ।

ସେ ସବୁ କଥା କହି ପ୍ରୀତି ଭିକ୍ଷା କଲେ ।

ବାରଙ୍ଗନା ଲୀଳାବତୀ କହିଲା

ଆପଣ ରାଜ ପୁତ୍ର । ସାମାନ୍ୟ ନୁହନ୍ତି । ଆପଣଙ୍କୁ ଏମିତ ଖୁସି କରିବାକୁ ମୋର ଇଚ୍ଛା ନୁହେଁ । ରାତ୍ରୀଯାପନ ଲାଗି ରାତକୁ ଆସନ୍ତୁ । ଆପଣଙ୍କ ଅପେକ୍ଷାରେ ରହିବି ।

ରାତିରେ ସେ ଲୀଳାବତୀ ଦ୍ୱାରରେ ପହଞ୍ଚି ଦେଖିଲେ ଦରଜା ବନ୍ଦ, ଭିତରୁ ଆଉଜଣେ ପୁରୁଷର କଥା ଶୁଭୁଛି । ସେ ଅପେକ୍ଷା କରି ବିରକ୍ତ ହୋଇ ଡାକିଲେ । ଇମିତ ରାତ ପାହିଲା ଲୀଳାବତୀ ଦରଜା ଖୋଲିଲା ନାହିଁ ।

ମନ ଦୁଃଖରେ ସେ ବସାକୁ ଫେରିଲେ । ପରେ ହେବାରୁ ଲୀଳାବତୀ ସୁବେଶ ହୋଇ ବଜାରକୁ ଯାଉଥିବାରୁ ତାଙ୍କୁ ଦେଖି ସତାଇ ପଚାରିଲେ ଓ ଲଜ୍ଜିତ ହେଲା ।

ପଦୁମଣି କହିଲେ—

—ଜଣା ଶୁଣା ଖଣାରେ ପଢ଼ିଲ ରେ
ଜଣା ଶୁଣା ସରଣୀ ଯା ଗ୍ରୁଢ଼ିଲରେ ॥
ଉଣାଟିଣ ବୁଦ୍ଧିରେ ତେଲ ସଣା ମଧ୍ୟରେ
ଚଣା ଟେଷଲ ବଣା ଅଡ଼ିଲରେ ॥
ଯନ୍ତ୍ରଜପତ୍ୱଂ ମନ୍ତ୍ର କଲବା ଉସବଣ
ସଙ୍ଗ ନାସ୍ତିକ ସଙ୍ଗ ଗ୍ରୁଢ଼ିଲରେ ।
କପଟ ମରକଟି ବଜାଉ ନାହାକାଟି
ଛାଡ଼ାନ୍ତରରେ ମୁଣ୍ଡ ମାଡ଼ିଲରେ ॥
ବହୁକାଳ ସୁରଙ୍ଗ ଘାଟାଳ ଫଟା ଲଙ୍ଗ
ଷିରେ ସ୍ୱକୁଷି ଆଣି ଜାଳିଲରେ ॥
କୁଷଳ କଥ ମୋର ମୁସଲମାନଙ୍କୀର
ଗଣ୍ଡକ ବଉପଦ ଯୋଡ଼ିଲରେ ॥
ସଭଟା ଭଜାଗର ମାରବରେ ଗଲଗର
ଯାତ୍ରା କୁକୁଟ ଘଣ୍ଟ ଡ଼ାକିଲରେ ॥
ଶୁଣିଲୁ ନାହିଁ ଶୀଉ ଯଦୁମଣିର ଭଜର
କର୍ମ ଦୋଷରୁ ଏହା ଘଟିଲରେ ॥

କଥ ତାଙ୍କ କାବ୍ୟରେ କହିଲେ ସଙ୍ଗ ନାସ୍ତିକ ଭୁଲ, ଅସଙ୍ଗ ବର୍ଜିତ ଚରିତ୍ରଙ୍କ ଅଣା କର ଯେଉଁ ବଳସଣ ହେଲ ଏହା ତାସ୍ ମୋର ସବୁଶିକ୍ଷା ହେଉଗଲ ।

କଥ ଏବେକ ଏହ୍ମର କଥ ଗବଷମଯ୍ ସ୍ୱସ୍ତକୁ ପ୍ରଜମାନ ଭୁଲ ପ୍ରତ୍ୟାବର୍ତ୍ତନ କଲେ ।

# ରଣପୁର ରାଜସଭାରେ ଯଦୁମଣି

ରଣପୁର ରାଜସଭାର ଖ୍ୟାତି ଶୁଣି କବି ଯଦୁମଣି କିଛିଦିନ ଲାଗି ନୟାଗଡ଼ ରାଜାଙ୍କ ଅନୁମତିରେ ରଣପୁରକୁ ଯାଇଥିଲେ ।

ସେଇବେଳେ ରାଜାଙ୍କୁ କିଛି ଉପହାର ଦେବାକୁ ସ୍ଥିର କଲେ । ରହସ୍ୟକାରୀ ଲୋକ ସେ । ସିଧା ସଳଖ କିଛି ଦେବାଠାରୁ ଏକ ରହସ୍ୟପୂର୍ଣ୍ଣ ହାସ୍ୟରସ ପରିବେଷଣ କରିବା ଉଦ୍ଦେଶ୍ୟରେ ଗୋଟିଏ ଶ୍ରେଷ୍ଠ ଶୀତଳ କୃଷ୍ଣ ପ୍ରତିମା ଯୋଗାଡ଼ କରି ତାକୁ ପାଟ କନାରେ ବାନ୍ଧି ତା ଉପରେ ଖଣ୍ଡେ କି ଦୁଇଖଣ୍ଡ ପତ୍ର ଗୁଡ଼ାଇ ଗଡ଼ାଟିଏ କରି କାଖରେ ଜାକି ନେଇଥିଲେ ।

ରାଜସଭାରେ ପ୍ରବେଶ କରି ମଙ୍ଗଳାଷ୍ଟକଟିଏ ଆରମ୍ଭ କଲେ ।

କାର୍ତ୍ତିକେୟ ନୃପଦୂତଦେ ମୂଷକ ପୋଲକେ
ସ୍ଥିତ୍ୱା ଲକ୍ଷ୍ମୀ ଗରୁଡ଼
ମାନସସ୍ଥ ଦବୌଭ ଦେବ
ଗଣେଶଃ ଶ୍ରୀ ଚର୍ଚ୍ଚ ନାରାୟଣଃ ।
ବୃନ୍ଦ ଭୂତବୃନ୍ଦନଃ

ଶ୍ରୀରପଚଶ୍ଚକ୍ଷୁଃ ସହସ୍ର ବତ୍ସୋ ।
ସ୍ୱଚ୍ଛ ମନ୍ଦମନ୍ତଃ ଏବାଂ ଚତୁର୍ମୁଖେ ।
ଟଭ୍ରେ କୁମାର ବୃନ୍ଦଂ ।

ଅର୍ଥାତ୍—ହେ ରାଜା ଲକ୍ଷ୍ମୀ ସରସ୍ୱତୀ ରାଜଶ୍ରୀ ଦୃଢ଼ତା ହୋଇ ରହନ୍ତୁ । ବିଷ୍ଣୁ ତର ମଙ୍ଗଳାଙ୍କୁ ଧରି ବାସ କରନ୍ତୁ ବ୍ରହ୍ମାଙ୍କର ଚତୁର୍ମୁଖେ 'ବେଦ ଧ୍ୱନି କରନ୍ତୁ ଇନ୍ଦ୍ର ବାକ୍ତି' ହେଉଥିବ ଶୀରତ୍ୱ ପ୍ରଦାନ କରନ୍ତୁ ?

ମଙ୍ଗଳ ଭବତୁ ରାଜ୍ୟେ
ମଙ୍ଗଳ ପ୍ରଜା ସକଳଂ ।
ମଙ୍ଗଳପୁର ନାରୀଣାଂ
ମଙ୍ଗଳଂ ରାଜଚନ୍ଦ୍ରବର୍ତ୍ତି ।

ହେ ରାଜା ତୁମ ରାଜ୍ୟର ମଙ୍ଗଳ ହେଉ, ପ୍ରଜାମାନେ ପୁରନାରୀମାନେ ମଙ୍ଗଳରେ ରହନ୍ତୁ, ତୁମର ରାଜ୍ୟ ଶାସନରେ ମଙ୍ଗଳ ହେଉ ।

ଏହାକହି ଭାଟ ଜନାର ପୁଟଳୀକୁ ଉପହାର ରୂପେ ଶ୍ରୀ-ହସ୍ତକୁ ବଢ଼ାଇ ଦେଇ ପ୍ରଣାମ କଲେ ।

ରାଜା ବସିବାକୁ ଆସନ ଦେଇ ଉକ୍ତ ପୁଟଳିଟିକୁ ନେଲେ । ଦୁଇ ସ୍ତର ଗରନ୍ତ ଫିଟାଇ ସଢଳେ ତକୁର ଯଦୁମଣି କରୁ ଧୈର୍ଯ୍ୟ ଭଙ୍ଗ ଠକାଇବା ଯୋଜନା କରିଛି । ତେଣୁ ସେ ତଳେ ଘଣ୍ଟିହେଲେ ।

ସୁତତୁର ପଦ୍ମମଣି ତାହା ଦେଖି ହସିଦେଇ କହିଲେ—

ପର ରାଜ୍ୟକୁ ଆସିଲ ବର୍ଷଣ ହାଇ
ତର ହାତେ ଦେଇ ଗୋଦାନ ଟେକ ।
ତଡ଼ା ମଧ୍ୟରେ କଳ ଖଡ଼ା ରଚନ
କାମୁଡ଼ା ଘୋଡ଼ା ମୁଖେ ଦେଲ ଚୁମ୍ବନ ।
ହେ ରାଜା ଏ କି କଲ
ବସ୍ତ୍ର ପ୍ରତିମାକୁ ତଳେ ଥୋଇଲ ।

ତାଙ୍କ ଉପହାସ ଆଉ ବ୍ୟଙ୍ଗ କବିତା ଶୁଣି ରାଜା ଲଜ୍ଜିତ ଓ ଅପମାନିତ ହୋଇ କ୍ରୋଧରେ ଜଳିଗଲେ । କେବଳ ସଭାରେ ଗାରବ ରହ କହୁ କହି ପାରିଲେ ନାହିଁ ।

କଥା ବୁଝିଲେ ରାଜା ଶ୍ରୀରଣ ରାଗି ଗଲେଣି । ଆଉ କଛୁ ନ କହି ସଭାରୁ ଉଠି ଠିଆହେଲେ । ରାଜା ଆଉ ବସିବାକୁ ନକହି-ବାରୁ ବାହାର ଆସି ବାହାରେ ରାଜାଙ୍କ ନାକୁଣୀ ହୋଇଁକୁ ଦେଖି ପଣ୍ଡିତଙ୍କୁ ଦେଲେ । ତା ପଣ୍ଡିତ ମଧ୍ୟରେ ଆକାଶ ଭରି ଗୋଟିଏ କବିତା ଲେଖି ରାଜାଙ୍କୁ ଦେବାକୁ କହି ସେଠାରୁ ଚଳାସୁ ନେଲେ । ସେ ଲେଖିଥିଲେ—

—ମଣି, ଫଣି, ଭୁବନମଣି
ଜଗତ ଧରଣୀଧର ପାରେଶ୍ବର ।
ଦୁର୍ଗେଶ୍ବର, ଭୁଜଧର ବେଣୁଧର
ନରେନ୍ଦ୍ର ମହାପାଣ୍ଡବଙ୍କ ।
ଘଟେ ସକଳ ଧରଣେ ମଣ୍ଡମାରେ,

ଧାନା ଷାଣ୍ଡ ଭାଙ୍କ ଷକାଇ ଷଚାଭା ଉଡ଼ାଇ
ନାହିଁ ସେ ସୀମାରେ ।

ହରିଚନ୍ଦନ ଜଗବନ୍ଧୁ ହୀନଲକ୍ଷଣ
ଟଙ୍କା ମୂଲ୍ୟବାଣ ମାଳିକ
କରନ୍ତୁ ଦେଇଙ୍କ ସଜନ ।

ଅଣ୍ଡା ଭଜ ସେ ମଣାଇନେ ସୁନ୍ଦରୀ ଏ ଗିର
ଖଣ୍ଡାଯୁକ୍ତ ବଂଶେ ଭଣ୍ଡାର ହେଲେ
ସେ ଧଣ୍ଡା କନ୍ଥା ରଣପୁର ।

ତାଙ୍କୁ ବୁଝ କଇ ଦେବାର ଇଚ୍ଛାକୁ
ସ୍ୱଦେଶ ବଶର ଅନେକ ।

ଦୁଃଖୀ ଭକ୍ତ ଶାର୍ଙ୍ଗି ଗୁଣବନ୍ତ
ଜନେ ବରଷିନ୍ତ ଜନକ ।'

ଯେଉଁ କାଳରେ ଉତ୍କଳ ଦେଶେ ଛନ୍ଦଭଙ୍ଗ
ସେ କାଳେ ସ୍ପଷ୍ଟକ ବୁଝଏ ଛନ୍ଦକ
ଝୋକାଇ ଅଛୁ ଉତ୍ତମାଙ୍ଗ ।

ଲକ୍ଷ ଗ୍ରନ୍ଥ ରଚନାନ୍ତି
ସେ ମୋର ସନ୍ଦୃଷ୍ଟ କନ୍ଥାରେ

ଅଷ୍ଟ ପ୍ରାଣୀ ନତ ଜଷ୍ଟ ପାଳିଚନ୍ତି
ସନ୍ତୁ ମୁଁ ମହା ଧନାରେ
ମହିମା ସରଳ ସରଳ ।

ନାକୁଣୀ କଲ୍ପର ଦାରନ୍ତୁ ସରଣେ
ନାକୁଣୀ କଲ୍ପର ସେଷିଲ ।

ଅର୍ଥାତ୍ ରଣପୁରରେ ଏକ ହାଣ୍ଡି ହାଉ ରହିଛି, କବି କବିତା ମନର ଅସୁବିଧା ଓ ରାଜାଙ୍କର ଜୟଗାନ କରି ନାକୁଣୀ ଯୋଡ଼ି ହାତରେ—ଉପଯୁକ୍ତ ବହୁ ଅର୍ଥ ସମାଯୁକ୍ତ କବିତାଟି ପଠାଇ ଦେଲେ ।

ରାଜା ତ ରାଗି ଯାଇଥିଲେ କବିତାଟି ପଢ଼ି ତାର ଅର୍ଥ ବୁଝି ସବୁ ଶାନ୍ତ ହୋଇଗଲା । ସେ କବିଙ୍କୁ ସୁଚତୁର ଓ ବୁଦ୍ଧିମାନ ଭାବି ରହସ୍ୟଜନକ କ୍ଷମା ପ୍ରଦାନ କରି ପୁନରାୟ କବିଙ୍କୁ ସସମ୍ମାନରେ ଡକାଇ ନେଇ ମଞ୍ଚରେ ବସାଇଥିଲେ ଏବଂ କିଛି ଦିନ ରଖାଇ ସଙ୍ଗରେ ବହୁ ଆନନ୍ଦ ପରିବେଷଣ କରାଇଥିଲେ । ଫେରିବା ବେଳକୁ ଉପଯୁକ୍ତ ଉପହାରାଦି ପ୍ରଦାନ କରିଥିଲେ ।

●

## କବି ବଡ଼ ନା ରାଜା ବଡ଼

କବି ଯଦୁମଣି ବିଚକ୍ଷଣ ବୁଦ୍ଧି ଦ୍ୱାରା ରାଜା ମହାରାଜାମାନଙ୍କୁ ପରାସ୍ତ କରୁଥିଲେ ।

ଥରେ ଖଣ୍ଡପଡ଼ା ରାଜା ଯଦୁମଣିଙ୍କୁ ତାଙ୍କର ଦରବାରରେ ପ୍ରଶ୍ନ କଲେ—

—ଦେଖ ଭଲ ! କଳାକାର ପଣ୍ଡିତ, ବହୁଗୁଣ ଏମାନେ ଦରିଦ୍ର । ଅଥଚ ଲୋକ ସମସ୍ତ ସମାଜ । ରାଜା ମହାରାଜାମାନ ଚଳନ୍ତି ବସ୍ତ୍ର ଧନ ଐଶ୍ୱର୍ଯ୍ୟ ରତ୍ନସିଂହାସନରେ ବସନ୍ତି । ସେମାନେ ପଣ୍ଡିତ ସର୍ବସ୍ୱ ବଡ଼ ମଣିଷ ?

ଭଲ ଭାବେ ଠିଆ ହୋଇଥିଲେ, ରାଜା ସିଂହାସନରେ । ତେଣୁ ପଦ୍ମମଣି ଭାବିଲେ ରାଜା ସମାଲୋଚନା କରୁଛନ୍ତି କଥାଟା ଜନସମାଜଙ୍କୁ କହ । ତହୁଁ ସେ ଶ୍ଳୋକ ପଢ଼ାଇଲେ—

ରାଜା ସିନା ପୂଜା ପାଇଥାଏ ଆପଣା ଦେଶରେ
ପଣ୍ଡିତ ପାଆନ୍ତି ପୂଜା ଦେଶ ବିଦେଶରେ ।

'ରାଜାମାନେ ନିଜ ଦେଶରେ ପୂଜା ପାଇଥାନ୍ତି । କିନ୍ତୁ ପଣ୍ଡିତ ଯିଏ ସେ ସର୍ବବନ୍ଦ୍ୟ; ସମାନ ସେ ସମଗ୍ର ପୃଥିବୀରେ ଅମର କୀର୍ତ୍ତି-ଧାରା ରୂପରେ ପୂଜିତ ହୁଏ ।

ଏକଥା ଶୁଣି ରାଜା ଅପମାନିତ ହେଲେ । ବୁଝିଲେ ବାସ୍ତବରେ ରାଜା ତ ଆଉ ପୃଥିବୀ ଲୋକଙ୍କ ମନ ହରଣ କରିପାରେନା, ରାଜ୍ୟ ଲୋକ ଭୟରେ ଜୟ ଜୟ କରନ୍ତି ।

ପଦ୍ମମଣିଙ୍କ ଯୁକ୍ତି ଯଥାର୍ଥ । ପଦ୍ମମଣି ଜାଣିଲେ ରାଜା ହାରିଗଲେ । ତହୁଁ ସେ ଧର୍ମଶାସ୍ତ୍ର ଓ ତନ୍ତ୍ର ଆଲୋଚନା କରି ସଭାଟିକୁ ସରଗରମ କରିପକାଇଲେ । ସଭା ଶେଷରେ ପୁରସ୍କୃତ ହୋଇ ଫେରିଲେ ।

# ଜିଜ୍ଞାସା ଚଉଳ ପାନ ବଡ଼ଙ୍କୁ

ଅପମାନର କଥାଟା କିନ୍ତୁ ଖଣ୍ଡାପଡ଼ା ରାଜା ଭୁଲି ନଥିଲେ । ଯଦୁମଣିଙ୍କୁ ଆଉ ଥରେ ଅପଦସ୍ଥ କରାଇବାକୁ ତାଙ୍କ ମନଥିଲା । ସେ ସମସ୍ତ ସୁବିଧା ଦେଖିବାକୁ ଅପେକ୍ଷା କଲେ ।

କିଛିଦିନ ପରେ ଥରେ ଯଦୁମଣିଙ୍କୁ ନେଇ ପାରିଷଦ ପାଇକ-ମାନଙ୍କ ସହିତ ବନ ଭ୍ରମଣରେ ବାହାରିଲେ । ବନ କାନନ ଗିରିମାଳା ଭିତରେ କଣ୍ଟକିତ ପଥ । ବୈଶାଖ ଅସହ୍ୟ ରୌଦ୍ର ତାପ । ଝାଞ୍ଜି ପବନ ପଥୁରିଆ ରାସ୍ତା ଉତ୍ତପ୍ତ ।

ଏଣେ ଯଦୁମଣି ଟିକେ ସ୍ଥୂଳ ଲୋକ ଥିବାରୁ ଦେହରୁ ଝାଳ ନିଗିଡ଼ି ମୁହଁ ନାଲି ପଡ଼ିଗଲା । ଖୁବ୍ କ୍ଳାନ୍ତ ସେ । ଠିକ୍ ଏହି ବେଳରେ ରାଜା ପାଲିଙ୍କି ଉପରୁ ଥାଇ ପଚାରିଲେ—

—କଣ ଖୁବ୍ କ୍ଳାନ୍ତ ହେଲଣି ! ଏବେ କୁହ ବଡ଼ କିଏ ? ମୁଁ ଉପରେ ଆରାମରେ ଅଛି । ତୁମେ ତଳେ ଏବେ କ୍ଳାନ୍ତରେ ଅସ୍ଥିର ?

ତତ୍ପର ଯଦୁମଣିଙ୍କର ମନେ ପଡ଼ିଗଲା ଯେ ପୂର୍ବର ଅପମାନ କଥା ରାଜା ଭୁଲି ନାହାନ୍ତି । ସେଇ କାରଣରୁ ଏପରି ଶ୍ଳେଷର ପ୍ରଶ୍ନ କଲେ । ସେ ଗୁଣ୍ଡିବାର ପାଖ ନୂଆନ୍ତ କହିଲେ—

ନଢ଼ତ ତଉଲ ସାନ ବଡ଼ଙ୍କୁ
ଲଷ୍ଟ ଦ୍ରୁଏ ସେ ରହେ ତଳକୁ ।

ବାଲୁକା ଲେଳେ ଉପରକୁ ଉଠନ୍ତି ମଣିମା । ଲଣ୍ଡ ଲୋକ ପଶ ତଳେ ରହନ୍ତି । ଏକକ ତାର ନ୍ୟସ୍ତ ପ୍ରମାଣ ।

ଯୌବନରେ ନାଶ ନହିଁ ଯାଏ ଲକ୍ଷ୍ୟ ଗାଳ
ପୂର୍ଣ୍ଣିମନ ଅବନତ ଉଚ୍ଚବ ମୂହଁର ॥
ଲଗ୍ନ ନଷ୍ଟ କହେ ଭଲ ମୂର୍ଖ ଜଣ ଜାଣ
ଫଳ ଭରେ ତଳୁ ଶାଖା ନଇବା ପ୍ରମାଣ ॥
ମୂର୍ଖ ଗାଣେ ସାଧୁ ନହିଁ ଥାଏ ଉଦ୍ଧ ଗାଲ
ବାଲୁକା ଆକାଂକ୍ଷାରେ ଉଡ଼ଇ ॥

ଏପରି ସୂକ୍ତିରେ ରାଜା ଆଶ୍ଚର୍ଯ୍ୟରେ ହାରିଗଲେ ଏବଂ ଠିକ୍ ରହସ୍ୟଟା ବୁଝି ତାଙ୍କୁ ନିଜ ପାଲଙ୍କ ଉପରକୁ ଉଠାଇ ବସାଇ ହସି ହସି କହିଲେ—

ସତରେ ତୁମେ ଚତୁର ଖାଲି ନୁହଁ । ବୁଦ୍ଧିମାନ ଓ ନମ୍ର ଭାବକ । ଅପ୍ରିୟ ସତ୍ୟ କମିତ କେନ୍ତ ଉପସ୍ଥାପିତ ମୁଁ ମୁହଁରେ କରିନାହିଁ ।

ରାଜା ଖୁସି ହୋଇ ସେବକ ବହୁତ ଉପହାର ସ୍ୱରୂପ ଏକ ପାଦୁକା ଓ ପାଟ ଯୋଡ଼ିଟିଏ ତାଙ୍କୁ ପ୍ରଦାନ କରିଥିଲେ ।

●

# ଉତ୍କଳ କେଶରୀ ପଦୁମଣି

ଫଲ୍ଗୁ ନଳାଦ୍ରୀ ଉତ୍ସବରେ ଜଗନ୍ନାଥଙ୍କ ଦର୍ଶନରେ ପଦୁମଣି ବର୍ଷ ଯାଉଥାନ୍ତି ।

ଉତ୍କଳ କେଶରୀ ଠାକୁରରାଜା ପ୍ରାଚୀନ କାଳରୁ ଶ୍ରୀକ୍ଷେତ୍ରରେ ରଥଯାତ୍ରା ଛେରା ପହଁରା କରିଥାନ୍ତି । ଲକ୍ଷେ ରାଜାଙ୍କର ସେ ମଉଡ଼ମଣି ।

ପଦୁମଣି ପୁରୀରେ ରହି ରଥଯାତ୍ରାରେ ରାଜାଙ୍କର ସେବା ଦର୍ଶନ କରି ଖୁସି ହେଲେ ଏବଂ ରାଜସଭାରେ ଉପସ୍ଥିତ ହୋଇ ନିଜର ପଣ୍ଡିତ୍ୱ ପ୍ରଦାନ କଲେ ।

ପଦୁମଣି ନିସ୍ୱାର୍ଥପର ସୁନାମଧନ୍ୟ ବୋଲି ପୁରୀ ରାଜା ଶୁଣିଥିଲେ । ତେଣୁ ପଣ୍ଡିତଙ୍କୁ ପାଇ ଆସିବାର କାରଣ ବୁଝି ଖେଦ ରାଜଭବନରେ ରହିବାକୁ ନିର୍ଦ୍ଦେଶ କଲେ । ବାହୁଡ଼ା ଯାତ୍ରାରେ ଫେରିବାକୁ ମଧ୍ୟ କହିଲେ । ତାଙ୍କର ସମସ୍ତ ଦାୟିତ୍ୱ ଗ୍ରନ୍ଥକରଣ ଓ ପଣ୍ଡିତ ସଭା ତତ୍ତ୍ୱାବଧାରକଙ୍କୁ ପ୍ରଦାନ କଲେ ।

ପଦୁମଣି ଆନନ୍ଦରେ ସ୍ୱୀକାର କଲେ ।

ଜାଣିଥାଏ ଚୋର ଅପାର ଗୁଣ
ତାହାକୁ କେଉଁଠି କରନ୍ତୁ ଧନ ।

ମାଗିଲେ ଯାଉନ କେ ମୁଠା ଅନ୍ନ
ଯାଉ ଦେଲ ପୁଣି କ୍ଷୀର ମିଷ୍ଟାନ୍ନ
ନ ଦେବ ଯଦୁଆ କଡ଼
କାଳିଆ ବଳିଆ ସୁଭଦ୍ରାଙ୍କ ମୂର୍ତ୍ତି
ଢାଙ୍କୁଛି ଟିକଏ ଲୁଗ ।

ଭବ ଗଜପତି ରାଜଦରବାରରେ ବସି କୃଷ୍ଣଲୀଳା ରସ ଏହି ଅଭିନବ ନୂଆ ମଞ୍ଜୁଳ କଲ୍ପନା କାବ୍ୟ ଅତି ସରଳ ସାବଲୀଳ ଭାଷାରେ ଗାନ କରି ନିଜେ ବ୍ୟଙ୍ଗ ଓ ବିଦ୍ରୂପ ଅଳଙ୍କାରରେ ଅତି ସୁନ୍ଦର ବ୍ୟାଖ୍ୟା ଶୁଣାଇ ଆଶ୍ଚର୍ଯ୍ୟ ପ୍ରତିଭା ଦେଖାଉଛନ୍ତି ।

ଦୁଃଖର କଥା କବିଙ୍କର ଗ୍ରନ୍ଥଗୁଡ଼ିକ ଏଯାଏ ସଂଗ୍ରହ ହୋଇ ପାରି ନାହିଁ କମ୍ବା ଲୋକଲୋଚନକୁ ଆସିପାରି ନାହିଁ । ତେବେ ଗଜପତି ଓ ମୁକ୍ତି ମଣ୍ଡପ ପଣ୍ଡିତସଭା ମଣ୍ଡଳୀ ତାଙ୍କ କାବ୍ୟରସ ବିଦୂଷକ ପଦବୀ ଦେଇଥିଲେ । ତାହା କେତେକ ପ୍ରାଚୀନ ପୋଥି ସଂଗ୍ରହରୁ ସତ୍ୟ ପ୍ରମାଣିତ ହୁଏ । କବି ସ୍ୱୀକୃତଠାରୁ ନଷ୍ଟର ଓଡ଼ିଆ ଭାଷା ଉପରେ ଗୁରୁତ୍ୱ ଦେଉଛନ୍ତି । ଏଣୁ ସେ ପ୍ରାଚୀନ ଓ ଓଡ଼ିଶାର ରକ୍ଷାକର୍ତ୍ତା କହିଲେ ଚଳେ ।

# କବିଙ୍କ ସହିତ କବିଙ୍କ ଲଢେଇ

ଉତ୍ତର ଭାରତରେ ଚକ୍ରପାଣି ନାମରେ ଜଣେ ପ୍ରଧାନ କବି ଦେଶ ପର୍ଯ୍ୟଟନ କରିବାକୁ ବାହାରିଲେ ଗଡ଼ରେ ପହଞ୍ଚିଲେ । ସେ ବହୁ ଭାଷା ଜାଣିଥିଲେ । ସବୁ ଭାଷାର ପଣ୍ଡିତଙ୍କ ସହିତ ସେ ସମସ୍ୟା ଲଢ଼େଇ କରି ଜୟଲାଭ କରୁଥିଲେ ।

ଯଦୁମଣି ଏକଥା ଜାଣିପାରି ସାଧାରଣ ଦରିଦ୍ର ବ୍ରାହ୍ମଣ ବେଶରେ ମହା କବି ଚକ୍ରପାଣିଙ୍କୁ ଦେଖା ଦେଲେ । ସେ କହିଲେ—

—ପଣ୍ଡିତେ ମତେ ଆପଣ ପ୍ରଶ୍ନ କରନ୍ତୁ ମୁଁ ଉତ୍ତର ଦେବି

ମହାକବି ହସି କହିଲେ—

ଆରେ ମୂର୍ଖ । ବଡ଼ ପଣ୍ଡିତ କବି ସଭାରେ ମୋ ସହିତ ଲଢ଼ିବେ । ତୁମେ ତ ସାମାନ୍ୟ ଭିକାରି ବ୍ରାହ୍ମଣ··· ।

ଯଦୁମଣି କହିଲେ—

—ଧନ୍ୟ ତୁଆକୁ ଆଉ ପରୀକ୍ଷା ।

ଚକ୍ରପାଣି ଦେଖାଇବାର ଜନ୍ୟ ସାମାନ୍ୟ ପ୍ରଶ୍ନଟିଏ କଲେ—

—ପ୍ରମତ୍ତ କେଶସ୍ୟ ରାଜ କପାଳକୁ

ନଗରଜ କବାଟରେ ।

—ଏହାର ପାଦଟି ପୂରଣ କରି ପାରିବ ?

ପଦ୍ମମଣି ହସି ଦେଇ କହିଲେ ଏ ତ ସାମାନ୍ୟ—

—ମହା ସାମରଥ ଗଣନାଥ ମାଥ
କଇଳାସ ଶିଖରରେ ।

ମହା ଜନ ଚମତ୍କୃତ ହେଲେ । ଶ୍ଳୋକଟା ପାଠ ପଢ଼ିଛି । ଆଉଟିଏ ଟାଣ ପ୍ରଶ୍ନ ପଚାରିଲେ—

—କେମେଁ ପ୍ରଶଂସିବା ପ୍ରଶଂସା ସଦଗ
ଅଛି ବୋଲି କଲ ସ୍ୱତରେ ?

ପଦ୍ମମଣି କହିଲେ—

ମୁଁ ବଖାଣୁଛି ଯେ ବାଳା ମଣିର
ଶ୍ରୀଚରଣ ବେଳା ସ୍ୱତରେ ।

ପ୍ରଶ୍ନ ହେଲା—ଇନ୍ଦ୍ରଙ୍କୁ କେଉଁ ଗୁଣରେ ପ୍ରଶଂସା କରିବା ?

ଯୁକ୍ତି—ସୁନ୍ଦରୀ ଯୁବତୀର ମନ ହରଣ କରି ଯିଏ ଚମତ୍କୃତ ଭଙ୍ଗ କରି ପାରୁଛି ସେ କାହିଁକି ପ୍ରଶଂସାର ଭାଜନ ନହେବ ।

ଏପରି ବହୁ ଜଟିଳ ପ୍ରଶ୍ନକୁ ଯୁକ୍ତିରେ ପଦ୍ମମଣି ଖଣ୍ଡନ କରି ଥିଲେ । ତନ୍ତ୍ରପାଣି ପଦ୍ମମଣିଙ୍କର ପରିଚୟ ପାଇ ଆଉ ସ୍ୱଜସସ୍ତୁ ଯିବେ କଣ ସେଇଠାରୁ ଲାଜରେ ପଳାଇଗଲେ ।

●

# କାଠଗଡ଼ା ଏବେ ଚୋଲଡ଼ା ହେଲାଣି

ତାଙ୍କର ଜନ୍ମଭୂମି ଥିଲା ଆଠଗଡ଼ରେ । ଶେଷ ବେଳକୁ ସେ ଜନ୍ମଭୂମିରେ ବିଶ୍ରାମ ଚାହୁଁଥିଲେ ।

ନୟାଗଡ଼ ରାଜା ପାଖରୁ ଛାଡ଼ିବାକୁ ଚାହୁଁ ନଥାନ୍ତି । ସବୁ ପ୍ରକାର ସାହାଯ୍ୟରେ ଅଭାବ କିଛି ସେ ରଖୁ ନଥିଲେ ।

କ୍ରମେ ମାସ ବର୍ଷ ବିତି କବି ବୃଦ୍ଧ ହୋଇଗଲେ । ଦେହ ଅଚଳ ହେବାକୁ ଲାଗିଲା । ରାଜା ଏକ ଧମଜାମା ବରାଦ କଲେ ।

ଯଦୁମଣି କହିଲେ—

ମର୍ତ୍ତ୍ୟ ମଣ୍ଡଳେ ଦେହ ବହି<br>
ପ୍ରାଣୀ ଅବଶ୍ୟ ମରିବ ।

—ଏକ ସ୍ଥାନେ ତୁମେ ପଥ ପ୍ରବର୍ତ୍ତ .

ମହାନ ଯେ ରାଜେଶ୍ୱର<br>
ତୁମର ପ୍ରସାଦେ ଦଶଦ୍ଧ କଳେବର<br>
ମହିମା ହେଲା ପ୍ରଚାର ।<br>
ଜନ୍ମମାଟି ଲାଗେ ମରଣ ଦୁଆରେ<br>
ଶିବ ଏବେ ଆପଣ

ଭାମ ଜାମଧାର ଯୋଗାଡ ରଖନ୍ତୁ

କେଇ ଖଣ୍ଡ ଗଡ଼ ।

କବିଙ୍କ କଥାର ମର୍ମ ବେଳ ମୃତ୍ୟୁ ଭାବସ ଆସିଲାଣି । ନୟାଗଡ଼ ରାଜ ସଭାରେ ସେଦିନ ଏକ ଉଣା କୁତୁହଳ·ପୂର୍ଣ୍ଣ ବିଷମ ପରିବାର ଯେପରି ବୋଟି ଅସିଥିଲା ।

ବାହ୍ମଣ ଦୁଃଖରେ ରାଜାଙ୍କ ଅଶ୍ରୁ ଛଳ ଛଳ ହୋଇ ଉଠିଥିଲା କବିଙ୍କ ସ୍ବର୍ଣ୍ଣ ।

# କବିଙ୍କର ଶେଷ ଅବସ୍ଥା

ମରଣଶୀଳ ଜଗତରେ ପ୍ରାଣୀ ମାତ୍ରେ ହିଁ ମାଟିରେ ମିଶନ୍ତି । ସେମାନଙ୍କର ଗୁଣ ଗାଥା, ଯଶ କୀର୍ତ୍ତି ଆଦି ଅମର ହୋଇରହେ ।

ଜରାଜୀର୍ଣ୍ଣ ଯଦୁମଣି ସମସ୍ତଙ୍କୁ ଦୁଃଖରେ ଘୁଡ଼ ଆଠଗଡ଼ର ଜନ୍ମମାଟିକୁ ଫେରିଗଲେ । ଆଠଗଡ଼ ରାଜା ବହୁତ ଖୁସି ହୋଇ ରାଜ ବୈଦ୍ୟ ଲଗାଇ ତାଙ୍କର ଚିକିତ୍ସା କଲେ ସ୍ୱାସ୍ଥ୍ୟର ଉନ୍ନତି ଲାଗି ପାର୍ଶ୍ୱ ଗାଁରେ କାମନା କରି ନୟାଗଡ଼ ରାଜା ବହୁ ଧର୍ମାନୁଷ୍ଠାନ କରିଥିଲେ । ନଶ୍ବର ଜଗତ ତୋଳରେ ଶେଷେ ତାଙ୍କର ମର ଶରୀର ଭଲ ଛଡ଼ିଲା ।

ସ୍ୱର୍ଗ ତଳରେ ଜାଳ ବଳେ
ଯଶ ରଶ୍ମିର ମଣ୍ଡି ତଳେ ।

ଆଜ ପଦ୍ମମଣୀ ନାହାନ୍ତି । ମାଟିରେ ମିଶିଥିବା ମର ଦେହ ଅମର ଆତ୍ମା ମହାକାଶରେ ରହି ସମସ୍ତ ପ୍ରତିଭାବାନ କବିଙ୍କ ଜୀବନର ଆଦର୍ଶ ହୋଇ ଲେଖଣୀକୁ ସମୃଦ୍ଧି କରାଉଛନ୍ତି ।

ସେ ଲେଖିଛନ୍ତି—

—ମିଳି ଯିବ ମୁହିଁ ମହାକାଳ କୋଳେ
କାମନା ଲେଖଣୀ ମୋର

ଦୁଃଖ କଳାକାର ପ୍ରେରଣା ଯୋଗାଇ
ପ୍ରତିଭା କରୁ ଅମର ।

ମହାନ ଓଡ଼ିଆ କବି ପଦ୍ମମଣି ଓଡ଼ିଆ ଜାତିର ଚିର ସ୍ମରଣୀୟ ଓ ନମସ୍ୟ ।

ତାଙ୍କର ପୁଣ୍ୟ ସ୍ମରଣରେ ଏଇ କ୍ଷୁଦ୍ର ପୁସ୍ତକରେ ସାମାନ୍ୟ ଶ୍ରଦ୍ଧାଞ୍ଜଳି ମାତ୍ର ଲିପିବଦ୍ଧ ହେଲା ।

କବିଙ୍କ କଲମରେ—

ବାମନ ହୋଇ ମୁଁ ବଢ଼ାଏ କର
ଆକାଶ ଚନ୍ଦ୍ର କି ମିଳେ ପାଶର ।
ଉପହାସ ଖାଲି ହେଲି ଜଗତେ
ଜୟ ପଦ୍ମମଣୀ ବନ୍ଦନ ଗୀତେ ।

* ସମାପ୍ତ *

ମୁଦ୍ରଣ—ବିଶ୍ୱଜିତ ପ୍ରିଣ୍ଟିଂ ପ୍ରେସ୍, ଖଲିଷା ବଜାର, କଟକ-୨

